ସଚିତ୍ର

# ରାସକ୍ରୀଡ଼ା ।



ଶ୍ରୀପ୍ରମଥଲାଲ ସରକାରଙ୍କ ଦ୍ୱାରା

ଅଷ୍ଟମବାର ପ୍ରକାଶିତ ।

PRINTED & PUBLISHED BY SARAT CH. RAY.
AT THE ANGLO SANSKRIT PRESS,
51, SANKARITOLA
CALCUTTA.
1921

ମୂଲ୍ୟ ଟ ୦/୬ ଛଅପଇସା ମାତ୍ର ।

# ରାସକ୍ରୀଡ଼ା ।

## ପ୍ରଥମ ଅଧ୍ୟାୟ ।

### ଶ୍ରୀ ଶୁକ ଉବାଚ ।

ଶୁଣ ପରୀକ୍ଷ ନରନାଥ । କୃଷ୍ଣ ଚରିତ ଭାଗବତ ॥
ଗୋବିନ୍ଦେ ବିଚାରନ୍ତି ମନେ । ଆଜ ରମିବା ବୃନ୍ଦାବନେ ॥
ଷୋଳ ସହସ୍ର ଗୋପନାରୀ । ମୋତେ ବରିଲେ ତପକରି ॥
ମୁଁ ତାଙ୍କ ପୂରାଇବି ଆଶ । ସେ ମୋର ଭକତ ବିଶ୍ୱାସ ॥
ଅନେକ ଜନ୍ମେ ତପ କରି । ଏବେ ହୋଇଲେ ଗୋପନାରୀ ॥
ରମଣ ଦେବି ବ୍ରଜପୁର । ଆଜ ମୁଁ କରିବି ବିସ୍ତାର ॥
ଏତେ ବିଚାରି ବନମାଳୀ । ଘେନିଲେ ବିରହ ମୁରଲୀ ॥
ସ୍ୱଭାବେ ଶରଦରକାଳ । ପବନ ବହେ ପଦ୍ମମଳ ॥
ଗଗନେ ପ୍ରକାଶିଲେ ଶଶୀ । ନିର୍ମଳ ବିରାଜଇ ନିଶି ॥
ଫୁଟିଲେ ଜଳସ୍ଥଳେ ଫୁଲ । ସୁଗନ୍ଧ ଶୀତଳ ଅମୂଲ୍ୟ ॥
ଚନ୍ଦ୍ରମଣ୍ଡଳ ଅଖଣ୍ଡିତ । ଦେଖି ଉପତ ଗୋପୀନାଥ ॥
ଲକ୍ଷ୍ମୀଙ୍କ ମୁଖ ପ୍ରାୟ ଦିଶି । କିରଣେ ଦଶଦିଗ ତୋଷି ॥
କାଳନ୍ଦୀକୂଳେ ବୃନ୍ଦବଣି । କଦମ୍ବ ତରୁ ମୂଳେ ବସି ॥
ରଜନୀ ତରକାଳ କଲେ । ମାୟାପଟଳ ପ୍ରକାଶିଲେ ॥
ବୋଇଲେ ହୁଅ ବୃନ୍ଦବନି । ସହସ୍ରଯୁଗେ ଯାହା ଘୋଷି ॥
ତିରିଙ୍କି ଛନ୍ଦେ ତ୍ରିଭଙ୍ଗ ହୋଇ । ମୁରଲୀ ଅଧରେ ଲଗାଇ ॥
ଗୋପୀଙ୍କ ନାମ ଧରି ଧୀରେ । ମୁରଲୀ ଡାକଇ ସୁସ୍ୱରେ ॥
ଗୋପୀଏ ଥିଲେ ଗୋପପୁରେ । ନାଦ ଶୁଣିଲେ ଯେଝାଘରେ ॥
ଦଣ୍ଡେ ଶୁଣିଲେ ସ୍ଥିରକରି । ବେଣୁ ଡାକଇ ନାମ ଧରି ॥
ଶୁଣି ହୋଇଲେ ଛନ୍ନ ଛନ୍ନ । ବ୍ୟାପାରେ ନ ଲାଗଇ ମନ ॥

କର ଚରଣ ନ ଚଳଇ । ମଦନେ କମ୍ପୁଅଛି ଦେହୀ ॥
ନାଦେ ମୋହିଲେ ବନମାଳୀ । ଷୋଳ ସହସ୍ର ଗୋପବାଳୀ ॥
ଏକକୁ ଆରେକ ଲୁଚଇ । ଧାଇଁଲେ ଅସମ୍ଭାଳ ହୋଇ ॥
ବୋଲନ୍ତି ନ ପୁଣ ଏ ଜାଣି । ମୋତେ ହୋଇବ ସପତଣୀ ॥
ଆଗେ ମୁଁ ଯିବ ବୃନ୍ଦାବନ । ରମିବି ନନ୍ଦର ନନ୍ଦନ ॥
ଦେଖିବି ନୟନ ପୂରାଇ । ମୋହର ନାମେ ବେଣୁ ବାଇ ॥
କୃଷ୍ଣ ଡାକଇ ରାସକାଳେ । ଉଭାହି କଦମ୍ବର ମୂଳେ ॥
ଜଳକ୍ରୀଡାର ବେଳେ ଗଲା । ଆମ୍ଭର ବସ୍ତ୍ର ଚୋରି କଲା ॥
କଦମ୍ବ ବୃକ୍ଷେ ନେଇ ଥୋଇ । ଶୀତେ କମ୍ପଇ ଆମ୍ଭ ଦେହୀ ॥
ଜଳସ୍ଥ ବସ୍ତ୍ରହତ ହୋଇଲୁଁ । ଦନ୍ତରେ ତୃଣ ଧଇଲୁଁ ॥
ବୋଇଲେ ଉଠି ଆସ ନନ୍ତୁଁ । ଯେ ଯାହା ବସ୍ତ୍ର ନିଅ ଜାଣୁ ॥
ଯେ ଯାହା ବସ୍ତ୍ର ଚିହ୍ନି ନିଅ । ନୋହିଲେ ଜଳ ମଧ୍ୟେ ଥାଅ ॥
ତାର ବଚନେ ଲଜ୍ଜା ଛାଡି । ଆଣି ପିନ୍ଧିଲୁଁ ଯେଝା ଶାଢ଼ୀ ॥
ଆମ୍ଭର ଶୁଦ୍ଧ ମନ ଜାଣି । ହସି ବୋଇଲେ ଚକ୍ରପାଣି ॥
ଦେବତା ପୂଜ ନଦୀତୀରେ । ମୋତେ ଯେ ବରିଅଛ ବରେ ॥
ସେ କଥା କହିବଇଁ ମୁହିଁ । ଉଦ୍ୟମ କଲେ ବେଣୁ ତୁଇଁ ॥
ସେ କଥା ସୁମରିଲେ ଆଜ । ଆମ୍ଭର ଛଡ଼ାଇବେ ଲାଜ ॥
ଛଡି ତନୟ ଛନ୍ତି କୋଳେ । କେମନ୍ତେ ଯିବୁଁ ରାସକାଳେ ॥
ନ ଗଲେ ନ ରହେ ଜୀବନ । କାଳ ହୋଇଲା ବେଣୁସ୍ୱନ ॥
ଏମନ୍ତେ ହୋଇଲେ ବାହାର । ମଦନେ କମ୍ପଇ ଶରୀର ॥
କେ ଗୋପୀ ଦୁହୁଁ ଥିଲା ଗାଈ । ବାଛୁରୀ ବାନ୍ଧି ଛନ୍ଦ ଦେଇ ॥
ମୁରଲୀ ଶୁଣି କର୍ଣ୍ଣମୂଳେ । ଦୁହୁଣି ପକାଇଲା ତଳେ ॥
ମୁରଲୀଧ୍ୱନି ଶୁଣି ବେଗେ । ଧାଇଁଲା ବୃନ୍ଦାବନ ଲାଗେ ॥
କେ ବସି କାଢୁଥିଲା ସର । ମୁରଲୀ ଶୁଣିଲା ସୁସ୍ୱର ॥
ଡାକଇ ତାର ନାମ ଧରି । ବେଗେ ଧାଇଁଲି ଗୋପନାରୀ ॥
କେ କରୁଥିଲା ଦଧିଯୋଗ । ଶୁଣି ଧାଇଁଲା ବେଗ ବେଗ ॥

କେ ଦୁଧ ଚୂଲ୍ଲୀରେ ବସାଇ । ମୁରଳୀ ଶୁଣି ଗଲା ଧାଇଁ ॥
କେ କୋଳେ ବାଳକ ବସାଇ । ଦୁଧ ପିଆଏ ଗୀତ ଗାଇ ॥
କର୍ଣ୍ଣେ ଶୁଣିଲା ବେଣୁ ଧ୍ୱନି । ଡାକଇଁ ତାର ନାମ ଘେନି ॥
ବାଳକ ପକାଇଲା ତଳେ । ଧାଇଁଲା ମଦନ ବିକଳେ ॥
ସ୍ୱାମୀ ଶୟନ ସ୍ଥାନେ ଥୋଇ । କେ ଗୋପୀ ଚରଣ ଚପଇ ॥
ମୁରଳୀ ତାର ନାମ ଧରି । ଡାକଇ ଆସ ବେଗ କରି ॥
ପତି ଚରଣ ଥୋଇ ତଳେ । ବେଗେ ଧାଇଁଲା କାମଭୋଳେ ॥
କେ ବସି ଭୁଞ୍ଜୁଥିଲା ଅନ୍ନ । କର୍ଣ୍ଣେ ଶୁଣିଲା ବେଣୁସ୍ୱନ ॥
ବୋଲଇ ଆସ ଶୁଦ୍ଧ ବେଗେ । କୃଷ୍ଣଙ୍କୁ ଦେଖ ବନଭାଗେ ॥
ଶୁଣି ଭୋଜନ ଉପେକ୍ଷିଲା । ହସ୍ତ ପଖାଳି ନ ପାରିଲା ॥
ବେଗେ ଧାଇଁଲା ବୃନ୍ଦାବନ । ଯେଣେ ବାଜଇ ବେଣୁସ୍ୱନ ॥
କେ ବସି ଲିପୁଥିଲା ଘର । ମୁରଳୀ ଶୁଣିଲା କର୍ଣ୍ଣର ॥
ବୋଲଇ ଆସ ବୃନ୍ଦାବନେ । ହରିଙ୍କ ରମ ତୋଷ ମନେ ॥
ଶୁଣି ବ୍ୟାପାର ଉପେକ୍ଷିଲା । ବେଗେ ସେ ବୃନ୍ଦାବନ ଗଲା ॥
କେ ବସିଥିଲା ଭଜନଘରେ । କଜ୍ଜ୍ୱଳ ପାତ୍ର ଘେନି କରେ ॥
ଏକ ନୟନେ ରଞ୍ଜୁଥିଲା । ତା ନାମେ ମୁରଳୀ ଡାକିଲା ॥
ଧାଅଇଁ ଅସମ୍ଭାଳ ହୋଇ । କଜ୍ଜ୍ୱଳପାତ୍ର କରେ ନେଇ ॥
କେ ଗୋପୀ ବସ୍ତ୍ର ତଳେ ଥୋଇ । କୁଙ୍କୁମ ଶରୀରେ ଲେପଇ ॥
କର୍ଣ୍ଣେ ଶୁଣିଲା ବେଣୁଧ୍ୱନି । ଉଠିଲା କରେ ବସ୍ତ୍ର ଘେନି ॥
ଛନ ହୋଇଲା କାମଭୋଳେ । ପିନ୍ଧିଲା କନ୍ଧର ଅଞ୍ଚଳେ ॥
କେ ଗୋପୀ କୃଷ୍ଣ ନାମ ଧରି । ଗୃହ ବ୍ୟାପାର ସ୍ନେହେ କରି ॥
ଶୁଣିଲା କୃଷ୍ଣ ବେଣୁନାଦ । ମଦନ ବାଣେ ଭିନ୍ନ ଖେଦ ॥
ଏମନ୍ତେ କହିବଇଁ କେତେ । ଷୋଳ ସହସ୍ର ଯେଝା ମତେ ॥
କାହାର ସ୍ୱାମୀ ବଳବନ୍ତ । ଆଗରେ ଉଗାଳିଲେ ପଥ ॥
କାହାର ମୁଣ୍ଡ ଗୋଡ଼ାଇଲା । ଶ୍ୱଶୁର ଖୁଡ଼ୁତା ମଉଳା ॥
ଭାଇ ଭଣଜା ଧର୍ମମିତ୍ର । ଆଗରେ ଉଗାଳିଲେ ପଥ ॥

ବୋଲନ୍ତି ଗୋପୀଙ୍କି ଅନାଇ । ଏକଥା ଉଚିତ ନୁହଇ ॥
ରଜନୀ କାଳେ ଯାଅ ବନ । ଲଜ୍ଜା କି ଛାଡିଲ ବଦନ ॥
ଶୁଣି ବୋଲନ୍ତି ଗୋପବାଳୀ । ବନେ ବିଜୟ ବନମାଳୀ ॥
ଦେଖତ ଶୁଭୁଅଛି ନାଦ । ମୁରଲୀ ବଢ଼ାଇ ଆନନ୍ଦ ॥
କ୍ଷଣେ ମୁରଲୀନାଦ ଶୁଣି । ଆମ୍ଭେ ଆସିବୁଁ ଏତକ୍ଷଣି ॥
ଦାସବତ୍ସଳ ଭଗବାନ । ମୋହିଲେ ଗୋପାଳଙ୍କ ମନ ॥
ଭୁଣ୍ଡିକୁ ନଇଲା ଉତ୍ତର । ବାହୁଡି ଗଲେ ଯେଝାଘର ॥
ଏକ ଗୋପୀଏ କ୍ଷୀଣ ହୋଇ । ବେଗେ ସେ ନ ପାରିଲା ଯାଇ ॥
ତାହାର ସ୍ୱାମୀ କର ଧରି । ଘରେ ଆଣିଲା ରଜନୀଶି ॥
ଗମ୍ଭୀର ଭିତରେ ବାନ୍ଧିଲା । ଅନେକ ମାଡହିଁ ମାଇଲା ॥
ଦ୍ୱାରେ କବାଟ ଦେଲା କିଳି । ବିକଳେ କାନ୍ଦଇ ଗୁଆଳି ॥
ମୁରଲୀ ତାର ନାମ ଧରି । ଡାକଇ ଆସ ବେଗକରି ॥
ସେ ଗୋପୀ ବନ୍ଧନରେ ପଡି । କାନ୍ଦଇ ସ୍ତମ୍ଭେ ମୁଣ୍ଡ କୋଡି ॥
କୃଷ୍ଣର ଦେହେ ଦେଇ ମନ । କ୍ଷଣ କ୍ଷଣକେ ଅଚେତନ ॥
ସହି ନ ପାରି କାମ ଭର । ବେନି ଲୋଚନ କଲା ସ୍ଥିର ॥
ଧ୍ୟାନେ ଦେଖିଲା ଭଗବାନ । ଭିତରେ କଲା ଅଲିଙ୍ଗନ ॥
ଡାକିଲା କୃଷ୍ଣ ହାହା ହାହା । ପ୍ରାଣ ଛାଡିଲା ତୁମ୍ଭ ଦେଇ ॥
ସହି ନ ପାରି ତାପଭର । ପଶିଲା ଗୋବିନ୍ଦ ଶରୀର ॥

ପରୀକ୍ଷିତ ଉବାଚ ।

ଶୁଣି ପରୀକ୍ଷ ଦଣ୍ଡଧାରୀ । ମୂର୍ଚ୍ଛା ଭଇଣ ତଳେ ପଡି ॥
ବୋଲଇ ହୋଇ କୃତ କୃତ । କହିଲ ଶିଶୁଭାଗବତ ॥
ଏ ମୁକ୍ତ ହୋଇଲ କିମତ । ତୁମ୍ଭେ କହିଲ ବିପରୀତ ॥
ପର ପୁରୁଷେ ମନ ଦେଇ । ଯେ ନାରୀ ଏକାନ୍ତେ ରମଇ ॥
କପଟୀ ବାଦ ହୋଇତାରେ । ନରକେ ପଡ଼ଇ ଗର୍ଭରେ ॥
ସେ କିପାଁ ଗୋବିନ୍ଦେ ପଶିଲା । ମୋତେତ ସନ୍ଦେହ ଲାଗିଲା ॥
ସ୍ୱଭାବେ ସ୍ତ୍ରୀଙ୍କ ଜନ୍ମ ହୋଇ । ଧର୍ମ୍ମ ଅଧର୍ମ୍ମ ନ ଜାଣଇ ॥

ପର ପୁରୁଷେ ଚିତ୍ତ ଦେଲା । ସେ କିପାଁ କୃଷ୍ଣଙ୍କୁ ପାଇଲା ॥
ଶୁଣି ହସିଲେ ମୁନିବର । ବୋଲନ୍ତି ଶୁଣ ଦଣ୍ଡଧର ॥
ପୂର୍ବେ ମୁଁ ଶୁଣିଅଛୁ ଯେତେ । ପୁରାଣ ଶିରୀଭାଗବତେ ॥
କୃଷ୍ଣଙ୍କ କରି ଶତ୍ରୁ ବଳ । ମୋକ୍ଷ ହୋଇଲା ଶିଶୁପାଳ ॥
ତାହାଙ୍କ ପ୍ରାଣ ପଣେ ସେବି । କିପାଁ ନୋହିବେ ମୋକ୍ଷଭାଗୀ ॥
ଭକତ ତାରିବାର ଆଶେ । ବ୍ରହ୍ମ ପ୍ରକାଶି ଅଛୁ ଅଂଶେ ॥
ନିର୍ଗୁଣ ହୋଇ ଗୁଣବନ୍ତ । ଦାସବତ୍ସଳ ଗୋପୀନାଥ ॥
ତାହାର ନାହିଁ କାମ କ୍ରୋଧ । ଏକଇ ସ୍ୱଭାବ ସୁହୃଦ ॥
ଯାହାର ମନେ ଲପ୍ତ ହୁଏ । ସେ ପ୍ରାଣୀ ପଶେ କୃଷ୍ଣଦେହେଁ ॥
ଏଣୁ ତୁ ସନ୍ଦେହ ନ କର । ମହାମହିମା ଯୋଗେଶ୍ୱର ॥
ଏଣେ ନ କର ଖେଦ ଚିତ୍ତ । କହଇ ଶୁଣ ଭାଗବତ ॥
ଗୋପୀ ଯେ ଗଲେ ରାସକାଳେ । ମିଳିଲେ କଦମ୍ବ ତଳେ ॥
ଷୋଳ ସହସ୍ର ଗୋପବାଳୀ । ଦେଖିଲେ ପ୍ରଭୁ ବନମାଳୀ ॥
ନାନା କୁସୁମେ ପଦ୍ମମଳ । ହୃଦେ ଲମ୍ବଇ ବନମାଳ ॥
ଗୁଞ୍ଜାଗପାଟି ଚାରୁଚୂଳେ । ଶ୍ରବଣେ ମକରକୁଣ୍ଡଳେ ॥
ନୂପୁର କଙ୍କଣ ବିରାଜେ । ରତ୍ନମେଖଳା କଟି ସାଜେ ॥
ପୀତବସନ ବେଣୁଧର । ନିବିଡ଼ ସୁରଙ୍ଗ ଅଧର ॥
କୋଟିଏ କାମ ନୁହେ ସରି । ଦେଖି ଚକିତ ବ୍ରଜନାରୀ ॥
ଅନଳ ଦେଖିଣ ପତଙ୍ଗ । ଯେସନେ ଧାଆନ୍ତି ଉଦବେଗ ॥
ବେଢ଼ିଲେ ଶତପୁର ହୋଇ । କମ୍ପନ୍ତି କୃଷ୍ଣଙ୍କ ଅନାଇ ॥
ଗୋପୀଙ୍କି ଦେଖି ବନମାଳୀ । ବଦନୁ ଥୋଇଲେ ମୁରଲୀ ॥
କୋମଳ ମଧୁର ବଚନ । କହନ୍ତି ପ୍ରଭୁ ଭଗବାନ ॥
ଶୁଣ ଗୋ ବ୍ରଜବଧୂମାନେ । ତୁମ୍ଭେ ଅଇଲ କିମ୍ପା ବନେ ॥
ଗୋପର କହ ଭଲ କଥା । ମୋ ନନ୍ଦ ଯଶୋଦା ବାରତା ॥
ଗୋପେ କି ଆପଦ ପଡ଼ିଲା । ମୋତେତ ସନ୍ଦେହ ଲାଗିଲା ॥
ମୋତୁ ଗୋପାଳ କେଲେ ବାଞ୍ଛା । ତୁମ୍ଭେ ଅଇଲ ବନେ କାହ୍ନ ॥

ସର୍ବ ସମ୍ପଦ କଳେବର । କି ଅବା ମିଳିଲେ ଅସୁର ॥
ଏମନ୍ତ ପ୍ରାୟ ମୁଁ ମଣଇ । କିମ୍ବା ଅଇଲ ବନେ ଧାଇଁ ॥
ଭଲା ଅଇଲ ମୋ ନିକଟେ । ବଣା ନୋହିଲ ବଣବାଟେ ॥
ତବେ ମୁଁ ବାଉଥିଲ ବେଣୁ । ମୋତେ ଭେଟିଲ ଆସି ତେଣୁ ॥
ରଜନୀ ହୋଇଛି ଉଚ୍ଛୁର । ବନ ଗହନ କୁଞ୍ଜ ଘୋର ॥
ବ୍ୟାଘ୍ର ଭଲ୍ଲୁକ ବନଜୀବେ । ତୁମ୍ଭଙ୍କୁ ଦେଖିଲେ ଖାଇବେ ॥
ଦୁର୍ଲଭେ ସ୍ତ୍ରୀଜନ୍ମ ହୋଇ । ବନେ ତୁମ୍ଭର ଭୟ ନାହିଁ ॥
କଷ୍ଟେଁ ହୋଇବ ଆଜ ନାଶ । ମରଣେ କଲନ୍ତି ବିଶ୍ୱାସ ॥
ଯାଅ ନ ଯାଅଁ ବନ ଘୋରେ । ତୁମ୍ଭଙ୍କୁ ଲୋଡ଼ୁଥିବେ ଘରେ ॥
ମାତା ପିଅର ବନ୍ଧୁ ଭାଇ । ଲୋଡ଼ୁ ଅଛନ୍ତି ନାମଧଇ ॥
ଯେ ଯାହା ସ୍ୱାମୀ କୋପ ଭରେ । ଖୋଜନ୍ତି ଘର ଦ୍ୱାର ପଥେ ॥
ନ ପାଇ କରିବେଟି ରୋଷ । ତୁମ୍ଭେ ହୋଇବ ଜାତି ନାଶ ॥
ବନ୍ଧୁ ବାନ୍ଧବ ତୁମ୍ଭ ଘର । ଅନ୍ନ ନ କରିବେ ଆହାର ॥
ଜଳହିଁ ନ କରିବେ ପାନ । ତୁମ୍ଭେ ହୋଇବ ଜାତିହୀନ ॥
ନ ଜାଣି ଯେବେ ଗୋ ଅଇଲ । ବହନ କର ମୋର ବୋଲ ॥
ଦେଖ ଏ ବନ ପରିମଳ । ନାନା କୁସୁମେ ନବାଜଳ ॥
ମଳୟ ପବନ ଶୀତଳ । ତରୁ ପଲ୍ଲବେ ଭୃଙ୍ଗମେଳ ॥
ବହନ ଯାଅ ଗୋପପୁର । ନିଜ ପତିଙ୍କ ସେବା କର ॥
ଗାଇଙ୍କ ଗୋଡ଼େ ବତ୍ସା ବାନ୍ଧି । ତୁମ୍ଭେ ଯେ ଦୁହୁଁଥିଲ ଛନ୍ଦି ॥
ସ୍ତନ ନ ପାଇଣ ବାଛୁରି । କାନ୍ଦନ୍ତି ହମ୍ବାରବ କରି ॥
ବାଳକ ଧରିଥିଲ କୋଳେ । ପକାଇ ଅଇଲ ଯେ ତଳେ ॥
ଛୁଟିଲ ଓଷ୍ଠ ଦନ୍ତ ପାଟି । କାନ୍ଦନ୍ତି ତୁଣ୍ଡେ ଭରି ମାଟି ॥
ବହନ ନିଜ ଘରେ ଯାଅ । ସ୍ତନ ପିଆଇ ଗାଇ ଦୁହଁ ॥
ଯେବେ ଅଇଲ ବେଣୁ ନାଦେ । ମୋ ରୂପ ଦେଖିବାର ସାଧେ ॥
ଏବେ ଦେଖିଲ ମୋର ଦେହ । ଯାଅ ଗୋ ଦଣ୍ଡେହେଁ ନରହ ॥
ଉଚିତ ଧର୍ମ ଗୋ ତୁମ୍ଭର । ସ୍ୱାମୀଙ୍କ ସଙ୍ଗେ ପ୍ରୀତି କର ॥

ସ୍ୱାମୀର ଯେତେ ଭକ୍ତମାନ । ବାଳତନୟ ବନ୍ଧୁଜନ ॥
ଏ ସତ୍ୟକର୍ମ ଗୋ ତୁମ୍ଭର । ପୁଣି ବୋଲନ୍ତି ବେଣୁଧର ॥
ପୂର୍ବ ଅର୍ଜିଲା କର୍ମ ନେଇ । ଯେ ଯାହା ସ୍ୱାମୀ ଗୋ ମିଳଇ ॥
ଯେ ଯେତେ ହୁଏ ଅସୁନ୍ଦର । ଦୁଃଖୀ ଦରିଦ୍ର ବ୍ୟାଧିକର ॥
ତାହାଙ୍କୁ ନ କରିବ ସାନ । ସେ ବିଷ୍ଣୁ ଦେବଙ୍କ ସମାନ ॥
ତାହାଙ୍କ ପାଦେ ଏକଚିତ୍ତେ । ସେବା କରିବ ଆଦରତେ ॥
ଏ ମାୟା ସଂସାର ବେଭାର । ଯାହା ରଚିଲେ ବେଦବର ॥
ଏହା ଯେ ନ କରନ୍ତି ଭଲେ । ନରକେ ଯାନ୍ତି ଅନ୍ତଃକାଳେ ॥
ପର ପୁରୁଷେ ମନ ଦେଇ । ଯେ ନାରୀ ଏକାନ୍ତେ ରମଇଁ ॥
ତାହାର ନାହିଁ ସୁଖ ଲେଶ । ନରକେ ହୁଏ ପରବେଶ ॥
ଅହିତ ହୁଏ ନରଲୋକେ । ନିରାଶ ହୁଏ ସ୍ୱାମୀ ସୁଖେ ॥
ବିଧବା ହୁଏ ଜନ୍ମ ସାତ । ଯେ ନାରୀ ସ୍ୱାମୀ ଅବକତ ॥
ମୋତେ ଅଇଲ ଯେବେ ଦେଖି । ଏତେକ ପୂରିଲାଣି ଆଖି ॥
ଯେ ମୋତେ ଦୂରେ ଥାଇ ଚିନ୍ତି । ମନ ବଚନ ମୋତେ ଦିଅନ୍ତି ॥
ବେଗେ ହୁଅନ୍ତି ଭବୁଁ ପାର । ଖଣ୍ଡଇ ଭ୍ରମ ତାହାଙ୍କର ॥
ଯେ ମୋର ନିକଟେ ରହଇ । ସେ ପ୍ରାଣୀ ମୋତେ ନ ଭଜଇ ॥
ମାୟାରେଁ ହୋଇ ଛନ୍ନଛନ୍ନ । ବିଷୟଜଡେ ଥାଇ ମନ ॥
ସେ ମୋତେ ପାଇବ କେମନ୍ତ । ହସି ବୋଲନ୍ତି ଗୋପୀନାଥ ॥

ଶ୍ରୀ ଶୁକ ଉବାଚ ।

ମୁନି ବୋଲନ୍ତି ରାୟେ ଶୁଣ । ଯାହା କହିଲେ ନାରାୟଣ ॥
ଗୋପୀଏ କୃଷ୍ଣକଥା ଶୁଣି । ଚିନ୍ତା କରିଲେ ମନେ ଗୁଣି ॥
ବଜ୍ର ପଡ଼ିଲା ଯେସନେ ଶିର । ବଦନୁ ନଇଲା ଉତ୍ତର ॥
ନିଶ୍ୱାସ ବହେ ଖରତର । ଶୁଖିଲା ସୁରଙ୍ଗ ଅଧର ॥
ଦଶନେ ଅଧର କାମୋଡ଼ି । କରଯୁଗଳ ଶିରେ ତାଡ଼ି ॥
ଚରଣ ଅଙ୍ଗୁଳିର ଅଗ୍ରେ । ଭୂମି ଚିରନ୍ତି କାମବ୍ୟଗ୍ରେ ॥
କମ୍ପଇ ବିକଳେ ଶରୀର । ବେନି ଲୋଚନୁ ବହେ ନୀର ॥

ଅଞ୍ଜନ କୁଙ୍କୁମର ସଙ୍ଗେ । ଲୁହ ପଡ଼ଇ କୁଚଯୁଗେ ॥
ଦୁଃଖସାଗରେ ନିମଜ୍ଜିଲେ । ସମସ୍ତେ ଲୋଚନ ବୁଜିଲେ ॥
ହୋଇଲେ ମୃତପିଣ୍ଡ ପ୍ରାୟ । ଦେଖନ୍ତି ପ୍ରଭୁ ଦେବରାୟ ॥
କୃଷ୍ଣ ନିଷ୍ଠୁର ବାକ୍ୟ ଶୁଣି । ଧର୍ମ ଅଧର୍ମ ମନେ ଗୁଣି ॥
ଯାହାର ପାଇଁ ଗୃହବାସ । ଛାଡ଼ିଲୁ ଜୀବନର ଆଶ ॥
ତାର ନିଷ୍ଠୁର କଥା ପାଇ । ଜୀବନ ଦଣ୍ଡେ ନ ରହଇ ॥
ବେନି ଲୋଚନ ପଟେ କରେ । କୃଷ୍ଣଙ୍କ ଚାହିଁଲେ ସଧୀରେ ।
ପାଦେ ପଡ଼ିଲେ ଏକାବେଳେ । କହନ୍ତି ଜୀବନ ବିକଳେ ॥
ଶିର ଲଗାଇ ପଦ୍ମପାଦେ । ବୋଲନ୍ତି ଶୋକ ଗଦଗଦେ ॥
ହେ ନାଥ ପ୍ରଭୁ ଭବତ୍ରାହୀ । ଏମନ୍ତ ବୋଲୁ କାହିଁ ପାଇଁ ॥
ତୁ ନୋହୁ ଯଶୋଦାନନ୍ଦନ । ଅନାଦି ପ୍ରଭୁ ନିରଞ୍ଜନ ॥
ଆମ୍ଭେ ଅଭାଗୀ ଗୋପନାରୀ । ଆଉ କି ଯିବୁ ଗୋପପୁରୀ ॥
ଛାଡ଼ିଲୁଁ ବିଷୟ ବିଷାଦ । ପାଇ ତୋହର ପଦ୍ମପାଦ ॥
ଆମ୍ଭଙ୍କୁ ତେଜୁ କାହିଁ ପାଇ । ତୋ ଛଡ଼ି ଅନ୍ୟ ଗତି ନାହିଁ ॥
ତୋ ପାଦ ପଙ୍କଜର ମୂଳେ । ଜାଣି ରହନ୍ତି ଅନ୍ତଃକାଳେ ॥
ସେ ପାଦପଦ୍ମ ଆମ୍ଭେ ପାଇଁ । କାହିଁକି ଯିବୁଁ ଭବତ୍ରାହୀ ॥
ତୋହର ପାଇଁ ଦାମୋଦର । ଛାଡ଼ିଲୁଁ ସୁତ ପତି ଘର ॥
ଭଜନ୍ତି ଯେ ତୋହର ନାମ । ତାହାଙ୍କୁ ନାହିଁ ଦୁଃଖ ଶ୍ରମ ॥
ଆମ୍ଭେ ତୋ ପାଦେ ଚିତ୍ତ ଦେଇ । ନିଦ୍ଦଶ ହୋଇଲୁଁ ଗୋସାଇଁ ॥
ଉଭୟେ ନ ପାଇଲୁଁ କୂଳ । ତୁ ଯେ ବୋଲାଉ ଆଦିମୂଳ ॥
ଧର୍ମ ଦେବତାଙ୍କର ଗୁରୁ । ତୋର ମହିମା ମହାମେରୁ ॥
ଯାହା ବୋଇଲ ବେଦମତେ । ହେ ନାଥ ଶୁଣ ଏକଚିତ୍ତେ ॥
ଏ ଯେ ତୋହର ସାଧୁପଣ । ସେବିବୁଁ ସ୍ୱାମୀଙ୍କ ଚରଣ ॥
ଏ କଥା ଉଚିତ ତୋହର । ହେ ନାଥ ଶୁଣ ବେଦସାର ॥
ତୁ ଯେ ସକଳ ପ୍ରାଣୀଙ୍କର । ଦେହ ଜୀବନର ଠାକୁର ॥
ଯେ ପ୍ରାଣୀ ତୋହରେ ଭଜଇ । ତାହାର ଜନ୍ମ ବଧ ନାହିଁ ॥

ଅନେକ ପୁଣ୍ୟ କରିଥିଲେ । ତୋ ନାମ ଧରି ଅନ୍ତକାଳେ ॥
ଅଭୟ ବ୍ରହ୍ମେ ସେ ପଶନ୍ତି । ତୁମ୍ଭର ନାହିଁ ମନୋଭ୍ରାନ୍ତି ॥
ଆଉ କି ଗୋପପୁରେ ଯିବୁଁ । ପତି ତନୟ ଆବୋରିବୁଁ ॥
ଆମ୍ଭର ତେଣେ ନାହିଁ ଆଶା । ତୋ ନାମ କରିଛୁଁ ଭରସା ॥
ମନ କି ନ ଜାଣୁ ଆମ୍ଭର । ଆଶା ବିଶ୍ରାମ ବାନା ତୋର ॥
କାଳନ୍ଦୀତିରେ ନୃତ୍ୟ କରି । ପୂଜିଲୁ ଶଙ୍କର ଗଉରୀ ॥
ବର ମାଗିଲୁ ଆମ୍ଭେ ଯାହା । ହେ ନାଥ ନ ଜାଣୁ କି ତାହା ॥
ଆମ୍ଭର ବସ୍ତ୍ର ନେଗ କରି । ତୁମ୍ଭେ ବୋଲାଉ ନରହରି ॥
ରମିବି ବୃନ୍ଦାବନେ ମୁହିଁ । ନିଦ୍ରମ କଲୁ ବେଣୁ ଛୁଇଁ ॥
ଆମ୍ଭର ସାକ୍ଷ୍ୟ ଏ ମୁରଲୀ । କିମ୍ପା ପାଶୋରୁ ବନମାଳୀ ॥
ତୋହର ଯେବେ ଦୟା ନାହିଁ । କିମ୍ପା ଗାଇଲୁ ବେଣୁ ବାଇ ॥
ଆମ୍ଭର ମନ ନିଜ ଘରେ । ଭୁଲାଇଥିଲୁ ମୁହାଁସରେ ॥
ଶ୍ରବଣେ ମୁରଲୀ ଶୁଣିଲୁ । କର ଚରଣ ନ ଚଳିଲା ॥
ଜୀବନ ହରିଲୁ ଆମ୍ଭର । ଏବେତ କହୁଲ ନିଷ୍ଠୁର ॥
ହେ ନାଥ କର ପ୍ରାଣ ରକ୍ଷା । ଆମ୍ଭେ ପାଇଲୁ ବେଣୁ ଦୀକ୍ଷା ॥
ତୁମ୍ଭ ଅଧରୁ ସୁଧାରସ । ଆମ୍ଭର ମୁଖରେ ବରଷ ॥
ଜୀବନ ରଖ ନନ୍ଦବାଳ । ଆମ୍ଭର ପୂରିଲାଣି କାଳ ॥
କୋଠ ଅନଳ ପ୍ରାପ୍ତ ହୋଇ । କାମ ଅନଳ ହୃଦ ଦହଇ ॥
ଲଭିଅ ମୁଖୁଁ ରସ ଦେଇ । ଦାସବତ୍ସଳ ଭାବଗ୍ରାହୀ ॥
ଯେବେ ନ ରଖ ବନମାଳୀ । ମରିବୁ ସକଳ ଗୁଆଳୀ ॥
ହତ୍ୟା ହୋଇବ ତୋର କନ୍ଥ । ଶୁଣି କହନ୍ତି ଆନନ୍ଦକନ୍ଦ ॥
ଗୋପୀ ବୋଲନ୍ତି କୃଷ୍ଣ ଚହ । ପୂତନା ପ୍ରାଣ ଅଛୁ ଖାଇ ॥
ତୁ କାହିଁ ରଖିବୁ ଆମ୍ଭନ୍ତ । ନିଶ୍ଚୟ ହୋଇଲୁ ଅନାଥ ॥
ମରିବୁ ତୋହର ଉପରେ । ଜୀବନ ନ ରହେ ଶରୀରେ ॥
ହେ ନାଥ ତୋହର ପଦ୍ମରେ । କମଳା ସେବେ ନିରନ୍ତରେ ॥
ଆମ୍ଭର ପ୍ରିୟ ଅଟୁ ତୁହି । ଆଶା ନ ଛେଦ ଭାବଗ୍ରାହୀ ॥

ତୋହର ପାଦର ତୁଳସୀ । ମାଳା କରିବୁ ବୃନ୍ଦାବାସୀ ॥
କବରୀଭର ସଜ କରି । ତୋ ପାଦେ ସେବିବୁ ମୁରାରି ॥
ତୋହର ପାଦ ଦୃଢ଼ ଚିତ୍ତେ । ମୁନିଏ ଖୋଜୁଥାନ୍ତି ନିତେ ॥
ସେ ପାଦେ ପଶିଲୁଁ ଶରଣ । ଜୀବନ ରଖ ନାରାୟଣ ॥
ତୋର ଚରଣ ନରହରି । ସ୍ତନେ ବଦନେ ଶିରେ ଧରି ॥
ଆମ୍ଭର ତାପ ହୃଦୁଁ ଯିବ । ଶରଣ ରଖ ପଦ୍ମନାଭ ॥
ତୋର ସୁନ୍ଦର ମୁଖ ଦେଖି । ପିଛୁଡ଼ି ନ ପାରୁଁ ସେ ଆଖି ॥
ତୋହର ରୂପ ହୃଦେ ଗୁଣି । ବ୍ରହ୍ମାଣ୍ଡେ ଯେତେକ ତରୁଣୀ ॥
କେ ଦେହ ଧରିବ ଲଜ୍ଜରେ । ଶୁଣିଲ ନାହିଁ ତିନିପୁରେ ॥
ତୋହର ରୂପ ଦେଖି ବନେ । ପୁଲକ ହୋଆନ୍ତି ତରୁଗଣେ ॥
ବୋଲନ୍ତି ଶୁକ ମୁନିବର । ଶୁଣ ହୋ କୃଷ୍ଣରସ ସାର ॥
ଦେଖିଣ ଗୋପୀଙ୍କ ବିକଳ । ଦୟା ବହିଲ ଆଦିମୂଳ ॥
ଆନନ୍ଦେ ଟେକି ଭୁଜ ତୋଳି । ଆସ ବୋଇଲେ ବନମାଳୀ ॥
କୃଷ୍ଣଙ୍କୁ ବେଢ଼ିଲେ ଯୁବତୀ । ଗଗନେ ଯେହ୍ନେ ଗ୍ରହପନ୍ତି ॥
ତତକ୍ଷଣେ ପାଇଲେ ଜୀବନ । ହରଷ ଗୋପୀଙ୍କର ମନ ॥
ଗୋପୀଏ ତୋଷମନ ହୋଇ । ପୁଷ୍ପ ଲୋଡ଼ନ୍ତି ବନେ ଯାଇ ॥
ମାଳା ଗୁନ୍ଥିଲେ ଯତ୍ନ କରି । କର ବନ୍ଧିଲେ ନରହରି ॥
କାଳନ୍ଦୀ ବାଲିକୁଦେ ଯାଇ । ଗୋପୀଙ୍କ ମଧ୍ୟେ ଭାବଗ୍ରାହୀ ॥
ମାୟାର ଯୋଗବଳେ ହରି । ଷୋଳ ସହସ୍ର ରୂପ ଧରି ॥
ହୋଇଲେ ବେନି ବେନି ଜନ । ଗୋପୀ ରମିଲେ ଭଗବାନ ॥
ରତି ପଣ୍ଡିତ ବଳବନ୍ତ । ତୋଷିଲେ ଗୋପୀଙ୍କର ଚିତ୍ତ ॥
କୃଷ୍ଣ ରମଣ ରସ ପାଇ । ଗୋପୀ ବୋଲନ୍ତି ଗର୍ବ ବହି ॥
ଆମ୍ଭର ପ୍ରାପ୍ତି ଭାଗ୍ୟବନ୍ତ । ନାହିଁ ନୋହିବ ଏ ଜଗତ ॥
ରମିଲୁ ଅନାଦି ପୁରୁଷ । ଆମ୍ଭରେ ହୋଇଲେ ସେ ବଶ ॥
କୃଷ୍ଣ ଭକତ ଆମ୍ଭ ପ୍ରାୟେ । ସ୍ୱର୍ଗେ ନୋହିବେ ଦେବତାଏ ॥
ଏମନ୍ତେ ମନେ ଗର୍ବ କରି । ତାହା ଜାଣିଲେ ନରହରି ॥

ଗୋପୀଙ୍କ ମନ ଜାଣିବାରେ । ମାୟା କଲ୍ପିଲେ ନଦୀତୀରେ ॥
ଗୋପୀଏ ବୃନ୍ଦାବତୀ ନାମେ । ଥିଲା ସେ କୃଷ୍ଣ ସନ୍ନିଧାନେ ॥
ପୂର୍ବେ ସେ ତପ ଅଛି କରି । ଗୋବିନ୍ଦ ତାର ଭୁଜ ଧରି ॥
ଛନ୍ଦିଲେ ଗୋପୀଙ୍କର ମନ । କୃଷ୍ଣ ହୋଇଲେ ଅନ୍ତର୍ଦ୍ଧାନ ॥
ବୋଲଇ ଦାସ ଜଗନ୍ନାଥ । ବନେ ଲୋଡ଼େପି କୃଷ୍ଣ ପଥ ॥
ମୋହର ମନ ଗୋଡ଼ାଇଲା । କୃଷ୍ଣକୁ ଭେଟି ନ ପାଇଲା ॥
ବାହୁଡ଼ ହୋଇଲା ନିରାଶ । ସୁଜନେ ବୃନ୍ଦାବନେ ପଶ ॥
ମୁଁ ଅବା କେମନ୍ତ ଅନାଇ । କାହିଁ ପାଇବି ଭାବଗ୍ରାହୀ ॥
ପାମର ହୀନ ମୋର ବୁଦ୍ଧି । କୃଷ୍ଣ ଚରଣେ ମନ ଖେଦ ॥
ମୋ ଛର ପାଇବଇଁ କାହିଁ । ଯାହାର ଆଦି ଅନ୍ତ ନାହିଁ ॥
ସୁଜନ ଜନଙ୍କର ହିତ । କହଇ ଦାସ ଜଗନ୍ନାଥ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ରସକ୍ରୀଡ଼ାୟାଂ ଗୋପୀକା
ମୁରଳୀ ନାଦ ଶ୍ରବଣେ ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନୋ
ନାମ ପ୍ରଥମୋଽଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ ।

ଶ୍ରୀ ଶୁକ ଉବାଚ ।

ଶୁଣ ସଜନ ତୋଷମନେ । କୃଷ୍ଣ ଯେ ଗଲେ ଅନ୍ତର୍ଦ୍ଧାନେ ॥
ଗୋପ ଯୁବତୀ ନଦୀକୂଳେ । ଧାଇଁବେ ମିଳିଲେ ସକଳେ ॥
କୃଷ୍ଣ ନ ଦେଖି ବନ ଘୋରେ । ଭୟେ ପଡ଼ିଲେ ସେ କାତରେ ॥
କର୍ମନ୍ତ ଉଦ୍ଭବେ ରହିଁ । ରଜନୀ ଅର୍ଦ୍ଧ ଅଛି ହୋଇ ॥
କୃଷ୍ଣର ମାୟା ଯେବେ ମେଘେ । ମିଳିଲେ ଶଶାଙ୍କର ଆଗେ ॥
ଦେଖି ବିକଳ ଗୋପନାରୀ । ଡାକନ୍ତି କୃଷ୍ଣନାମ ଧରି ॥
ହେ ନାଥ ଆସ ତୁ ବହନ । ମେଘ ଆଚ୍ଛାଦିଲା ଗଗନ ॥
କ୍ଷଣେକେ ଯମୁନାର ତୀର । ମେଘ ଅନ୍ଧାର ବନ ଘୋର ॥
ଅନାଥ କରି ଗଲୁ କାହିଁ । ଅନ୍ଧରେ ପଥ ନ ଦିଶଇ ॥

ଏମନ୍ତେ କରନ୍ତି ରୋଦନ । କ୍ଷଣ କ୍ଷଣକେ ଅଚେତନ ॥
ଚନ୍ଦ୍ରାସାଗରେ ମହାଘୋରେ । ରୋଦନ କଲେ ଉଚ୍ଚସ୍ୱରେ ॥
ବାତୁଳ ପ୍ରାୟ ହୋଇ କାନ୍ଦ । ଏକ ଆରେକ ଛନ୍ଦାଛନ୍ଦ ॥
କୃଷ୍ଣର ଗତି ଅନୁରାଗ । ଅଲପ ହାସ୍ୟ ମୁଖରଙ୍ଗ ॥
ଅଧର ଚୁମ୍ବିବାର ଆଶେ । ମନ ପ୍ରବେଶି କୃଷ୍ଣ ପାଶେ ॥
ବାତୁଳକାନ୍ତି ଯେତେ କଲ । ସୁମରି ଗୋବିନ୍ଦର ଲୀଳା ॥
ଚିତ୍ତ ପ୍ରବେଶି କୃଷ୍ଣ ଦେହେଁ । ପଡ଼ିଲେ ଗୋପୀ ମୂର୍ଚ୍ଛାମୋହେ ॥
ପୁଣି ଉଠିଲେ ଜ୍ଞାନ ପାଇ । କହନ୍ତି ବାଇ ପ୍ରାୟ ହୋଇ ॥
କେ ବୋଲେ ମୁହିଁ ନାରାୟଣ । ସେବ ଲୋ ମୋହର ଚରଣ ॥
କେ ବୋଲେ ମୁହିଁ ନନ୍ଦବଳା । ଦେଖ ମୋ ଶିରେ ଗୁଞ୍ଜମାଳା ॥
ପୁଣି ଗୋପୀଏ ଆଗସରି । ବୋଲଇ ଦେଖିଲି ମୁଁ ହରି ॥
ଜାଣଇଁ ଏହି ପଥେ ଗଲା । ମୁରଲୀ ଘେନି ନନ୍ଦବଳା ॥
ପୁଣି ଉଠିଲେ ଧାଇଁକାରେ । ପଶିଲେ ଲତା ବନଘୋରେ ॥
ଖୋଜନ୍ତି ପଶି ବନେ ବନ । ଡାକନ୍ତି ଆସ ନନ୍ଦନାନ ॥
ବାତୁଳଙ୍କର ପ୍ରାୟ ହୋଇ । ପୁଚ୍ଛନ୍ତି ଆକାଶେ ଅନାଇଁ ॥
ବୋଲନ୍ତି ଶୁଣ ତରୁଗଣ । ତୁମ୍ଭେ ଦେଖିଲ ନାରାୟଣ ॥
କୋଟି ଭିତରେ ଥୋଇଅଛ । ଏ କଥା ଅଟଇ ପ୍ରତ୍ୟକ୍ଷ ॥
ଅଶ୍ୱତ୍ଥ ବଟଶାଲବୃକ୍ଷେ । ତୁମ୍ଭେ କି ଦେଖିଲ ପ୍ରତ୍ୟକ୍ଷେ ॥
ମଧୁରହାସ୍ୟେ ଆମ୍ଭ ମନ । ବାନ୍ଧିଣ ନେଲେ ନନ୍ଦନାନ ॥
ହେ କୁରୁବେଲ ନାଗେଶ୍ୱର । ଚମ୍ପା ବକୁଳ କନିଅର ॥
ତୁମ୍ଭ ପୀରତି ଘେନି ଚିତ୍ତେ । ଗୋବିନ୍ଦ ଗଲେ କି ଏ ପଥେ ॥
ତୁ ଯେ ତୁଳସୀ ହରିପ୍ରିୟା । ଲମ୍ବଇ କହିଅଛୁ ମାୟୀ ॥
ଗୋବିନ୍ଦ ହୃଦେ ଲମ୍ବି ଥାଉ । ଆମ୍ଭେ ପଚାରିଲେ ନ କହୁ ॥
ଅମ୍ଭେ ତୋ କଥା ଭଲେ ଜାଣି । ତୁ ଯେ ଆମ୍ଭର ସପତଣୀ ॥
ମାଳତୀ ମଲ୍ଲୀ ଯାଇ ଯୂଇ । ତୁମ୍ଭେ ଦେଖିଲ ଲବଙ୍ଗହାରୀ ॥
କୃଷ୍ଣର ନଖକ୍ଷତ ଲାଗି । ନ ପୁଣ ହୋଇଛ ସୁହାଗୀ ॥

ହେ ଚୂତ ପିଆଳ ପନସ । ଅସନ କଦାର କମ୍ବୁକ ॥
ବେଲ ବକୁଳ ନିମ୍ବ ଯୂଥେ । ଗୋବିନ୍ଦ ଗଲେ କି ଏ ପଥେ ॥
ତୁମ୍ଭେ ଯେ ଯମୁନାର ତୀରେ । ହୋଇଛ ପର ଉପକାରେ ॥
କହ ଶ୍ରୀକୃଷ୍ଣ ଗଲେ କାହିଁ । ମନ୍ଦରୁଁ ତା ମୁଖ ନ ଚାହିଁ ॥
ଯାନ୍ତେ ଦେଖିଲେ ବନଦେଶେ । ଅବନୀ ନ ଦଶଇ ପାଶେ ॥
ତାହାଙ୍କ ଚାହିଁ ଗୋପନାରୀ । ବୋଲନ୍ତି ଦେଖିଲ କି ହରି ॥
ଏଣେ ଯେ କୃଷ୍ଣ ଗଲେ ଧାଇଁ । ତାପାଦ ଲାଗି ଏହାଦେହୀ ॥
ପୁଲକ ହୋଇଅଛୁ ଦେଖ । ଆମ୍ଭେ ଯେ ହୋଇଲୁ ଅରକ୍ଷ ॥
ହରିଣୀଯୂଥଙ୍କ ଅନାଇଁ । କହନ୍ତି ଶୋକ ଭର ହୋଇ ॥
ଆମ୍ଭେ ଜାଣିଲୁଁ କଷ୍ଟେଁ ଆଜ । ତୁମ୍ଭେ ଦେଖିଲ ଦେବ ରାଜ ॥
ହରି ଚରଣଯୁଗ ଦେଖି । ନିର୍ମଳ କରିଅଛ ଆଖି ॥
ଏକ ଗୋପୀଏ ପଥେ ଧାଇଁ । ବୋଲଇ ଗୋପୀଙ୍କ ଅନାଇ ॥
ଦେଖ ଗୋ କୁନ୍ଦ ମଲ୍ଲୀ ବନ । ଏଥେଁ ଥିବ ସେ ନନ୍ଦନାନ ॥
ଏକ ଗୋପୀଏ ଆଗସରି । ଯାଇଁ ଖୋଜଇ ପୁଷ୍ପବାଡ଼ି ॥
କହନ ଆଣିଲ ସାନ୍ଟି । ଦେଖ ଗୋ କୁନ୍ଦମାଳ ଗୋଟି ॥
ଯେ ନାରୀ କୃଷ୍ଣ ଘେନି ଗଲା । ଏ ମାଳ ତାର ହୃଦେ ଥିଲା ॥
କୃଷ୍ଣର ଆଲିଙ୍ଗନ କାଳେ । ଛିଡି ଗୋ ପଡିଅଛି ତଳେ ॥
ତେଣୁ ସୁଗନ୍ଧ ଗୋ ଏହାର । ଏବେ ପାଇବା ଦାମୋଦର ॥
ପ୍ରିୟାର କଣ୍ଠେ ଦେଇହସ୍ତ । ଏ ପଥେ ଗଲେ ଗୋପୀନାଥ ॥
ପଦ୍ମ ଗୋଟିଏ ଘେନି କରେ । ବୃକ୍ଷଙ୍କ ଫଳ ପୁଷ୍ପଭରେ ॥
ପଶି ଯେ ଗଲେ ଏହି ବାଟେ । ଦେଖିଣ ଚାହାନ୍ତି ଉଚାଟେ ॥
ପୁଣି ବୋଲନ୍ତି ବୃକ୍ଷେ ଚାହିଁ । ମାଳତୀ ତାର ହୃଦେ ଥାଇ ॥
ପୁଲକ ହୋଇ ତୋ ଉପରେ । ଏଣୁ ଲାଗିଲା କୃଷ୍ଣ କରେ ॥
ଏମନ୍ତେ ହୋଇ ଉନ୍ମତ୍ତ । କୃଷ୍ଣର ପାଦେ ଦେଇ ଚିତ୍ତ ॥
ଏକ ଗୋପୀଏ ଆଗ ସରି । କୋଳେ ଚାପିଲା ଗୋପନାରୀ ॥
ତାହାର କୁଚେ ମୁଖ ଦେଇ । ନିର୍ଦ୍ଦରେ ଦେଲାକ ପକାଇ ॥

ବୋଲଇ ମୁହିଁ ନାଗସ୍ପୃଣ । ଶୋଷିଲି ପୂତନାର ପ୍ରାଣ ॥
ମୋତେ ଲୋ ଭଜ ଗୋପନାରୀ । ଚାପଇ କରେ କର ଧରି ॥
ଏକ ଗୋପୀଏ ପଛେ ଥିଲା । ପଦ୍ମର ଛନ୍ଦ ପକାଇଲା ॥
ବୋଲଇ ମୁହିଁ ଦାମୋଦର । ପାଦେ ଶକଟା କଲି ଚୂର ॥
ଏକ ଗୋପୀଏ କରି କାନ୍ଧେ । ଥକାଇ ବୋଇଲା ଆନନ୍ଦେ ॥
ଦେଖ ମାଇଲି ତୃଣାବର୍ତ୍ତ । ମୁଁ ସେ ଲୋ ଯଶୋଦାର ସୁତ ॥
କେ ଗୋପୀ ଜଙ୍ଘା ପଙ୍କେ ପଶି । ନାଚେ କିଙ୍କିଣୀ ନାଦ ଘୋଷି ॥
ବୋଲଇ ମୋତେ ସେବା କର । ମୁହିଁ ସେ ଯଶୋଦାକୁମର ॥
ଏକ ଗୋପୀଏ ଧରି କରେ । ବୁଲାଇ ପିଟିଲା ବୃକ୍ଷରେ ॥
ବୋଲଇ ମୁହିଁ ଦାମୋଦର । ଦେଖ ମାଇଲି ବତ୍ସାସୁର ॥
ଆଉ ଗୋପୀଏ ବୃକ୍ଷଡାଳେ । ଧରି ଚଢ଼ିଲା ବେଣ୍ଟଫାଳେ ॥
ବୋଲେ ମୁଁ ଯଶୋଦାକୁମର । ଦେଖ ଚିରିଲି ବକାସୁର ॥
କେ ବୃକ୍ଷଡାଳେ ମୁଖ ଦେଇ । ଗୀତ ମୂର୍ଚ୍ଛରେ ବେଣୁ ବାଇ ॥
ଏକର କନ୍ଧେ ଦେଇ ହସ୍ତ । ଚଳଇ ଯେସନେ ଗୋପୀନାଥ ॥
ବୋଲଇ ମୁହିଁ ବେଣୁଧର । ଦେଖ ଗୋ ଚଳଇଁ ସୁନ୍ଦର ॥
ପୁଣି ଗୋପୀଏ ଆଗସରି । ବୋଲଇ ହୃଦେ ହସ୍ତ ମାରି ॥
ଇନ୍ଦ୍ର ଗୁରକୁ କିପାଁ ଡର । ଆଜ ତୋଳିବି ଗିରିବର ॥
କେତେ ଲୋ ବରଷିବ ଆଜ । ବଜ୍ର ପାଷାଣ ଦେବରାଜ ॥
ଶାଢ଼ୀ ପାଲିଟି ବାମକରେ । ତୋଳିଲା ଅଙ୍ଗୁଳି ଉପରେ ॥
ଏକ ଗୋପୀଏ ବେଗେ ଧାଇଁ । ଆରକ ଶିରେ ପାଦ ଦେଇ ॥
ବୋଲଇ ପଳାଅ କାଳୀୟ । କାଳିନ୍ଦୀ ଭିତରେ ନ ଥାଅ ॥
ଖଳନାଶନ ବାନା ମୋର । ଅମୃତ କରିବଇଁ ନୀର ॥
କେ ଗୋପୀ ଡାକଇ ସୁସ୍ୱରେ । ନୟନ ବୁଜ ଧାଡ଼ିକାରେ ॥
ଅନଳ ଭକ୍ଷିବି ମୁହିଁ । ବସ ଲୋ ମୁଖେ କର ଦେଇ ॥
କେ ଗୋପୀ ଫୁଲମାଳ ଘେନି । କୋପେ ବୋଲଇ ଶିରଙ୍କଣି ॥
ଲବଣୀ ଖାଉ ତୁ ଚୋରାଇ । ଘେନେ ବାନ୍ଧିବି ତୋତେ ନେଇ

ଏମନ୍ତେ ଗୋପୀ ବାଇପଣେ । ଖୋଜି ବୁଲନ୍ତି ବନେ ବନେ ॥
ଯାଉଁ ଦେଖିଲେ ବାଲିବୁଦ । ପଡିଛି ଗୋବିନ୍ଦର ପାଦ ॥
ଚିହ୍ନିଲେ କୃଷ୍ଣପାଦ ବୋଲି । ଗୋପୀ ଧାଇଁଲେ ପେଲାପେଲି ॥
ଧ୍ୱଜ ଅଙ୍କୁଶ ଚକ୍ର ଚିହ୍ନ । ଦେଖି ଆନନ୍ଦ କଲେ ମନ ॥
କୃଷ୍ଣର ପାଦ ଅନୁସରି । ବନେ ଚାଲନ୍ତି ଗୋପନାରୀ ॥
ପୁଣି କେତେକେହେଁ ଦୂରେ ଯାଇ । ବୋଲନ୍ତି କୃଷ୍ଣପାଦ ଚାହିଁ ॥
ଦେଖ ଗୋ ଚରଣ ଉପର । ପଡିଛି କାହାର ପୟର ॥
ଯାହାକୁ କୃଷ୍ଣ ଘେନି ଗଲା । ସେ ତାର ପଛେ ଯାଉଥିଲା ॥
ଧନ୍ୟ ଗୋ ତାହାର ଜୀବନ । ମୋହିଲା ଯଶୋଦାନନ୍ଦନ ॥
ତାହାର ପାଦ ବର୍ଣ୍ଣ ଚିହ୍ନ । ଦହଇ ଆମ୍ଭର ଜୀବନ ॥
ଏକାନ୍ତେ କୃଷ୍ଣଙ୍କ ରମିଲା । କେତେ ଗୋ ତପ କରିଥିଲା ॥
ପୁଣି ନ ଦେଖିଲେ ପୟର । ଗହଳେ ଅଛି ତୃଣାଙ୍କୁର ॥
ପୁଣି କ୍ଷଣକେ ପାଦ ଦେଖି । ଗୋପୀଏ ଚାହାନ୍ତି ନିରେଖି ॥
ଦେଖ ଗୋ କୃଷ୍ଣର ପୟର । ଅଧିକ ଦିଶଇ ସୁନ୍ଦର ॥
କୃଷ୍ଣ ଯାହାକୁ ନେଉ ଥିଲା । ଏଠାରେ କବରୀ ଖସିଲା ॥
ପାଦ ଉପରେ ତାକୁ ତୋଳି । ଦେଖ ଗୋ ଫୁଲ ଅଛି ପଡି ॥
ରମଣ କଲା ତାକୁ ଭୁଲେ । କଥା ଥୋଇଲା ମହୀତଳେ ॥
ଦେଖ କାମିନୀ ଦୁଷ୍ଟପଣ । ବଶ ଗୋ କଲା ନାରାୟଣ ॥

ଶ୍ରୀ ଶୁକ ଉବାଚ ।

ଶୁଣ ପରୀକ୍ଷ ରସକେଳି । ଯାହାକୁ ନେଲେ ବନମାଳୀ ॥
ସେ ଗୋପୀ କୃଷ୍ଣ ପଛେ ଥାଇ । ଗରବ ମନେ ବିଚାରଇ ॥
ମୁଁ ଯେ ମୋହିଲି ହରିଚିତ୍ତ । ମୋ ଛଡ଼ୁଁ ନାହିଁ ଭାଗ୍ୟବନ୍ତ ॥
ତାହା ଜାଣିଲେ ଭବଗ୍ରାହୀ । ଗର୍ବ ବଢ଼ିଲା ତାର ଦେହୀ ॥
ମାୟା ମୋହିଲେ ଗୋପୀ ମନ । କୃଷ୍ଣଙ୍କୁ ବୋଲଇ ବଚନ ॥
ହେ ନାଥ ନ ପାରଇ ଯାଇ । ନିଅ ତୁ କାନ୍ଧରେ ବସାଇ ॥
ମୋହରେ ଅଛି ଯେବେ ମନ । ବିଶେଷେ ଘୋର କୁଞ୍ଜବନ ॥

ମୁଁ ଏବେ ନ ପାରଇ ଚାଲି । ଶୁଣି ହସିଲେ ବନମାଳୀ ॥
ବୋଇଲେ ବସ ମୋର କାନ୍ଧେ । କୃଷ୍ଣ ଆସିଲେ ବାଳବୃନ୍ଦେ ॥
ଶୁଣି ଗୋପିକା ତୋଷ ହୋଇ । ବସିଲା କୃଷ୍ଣ କାନ୍ଧେ ଯାଇଁ ॥
ଉଠିଲେ ପ୍ରଭୁ ଚକ୍ରଧର । କାମିନୀ ଧରିଅଛି ଶିର ॥
କେତେହେଁ ଦୂର କୃଷ୍ଣ ଯାଇ । ଅନ୍ତର ହେଲେ ଭାବଗ୍ରାହୀ ॥
ଗୋପୀ ପଡ଼ିଲା ମୁଖମାଡ଼ି । ଭୂମିର ପଡ଼େ ଓଷ୍ଠଛିଡ଼ି ॥
ଦଣ୍ଡେ ହୋଇଲା ମୂର୍ଚ୍ଛିତ । ଉଠି ଲୋଡ଼ଇ ଗୋପୀନାଥ ॥
ସେ କାହିଁ ପାଇବ ମୁରାରି । ଶିଙ୍ଗ ଗଞ୍ଜନ ନରହରି ॥
ଡାକିଲେ ଉତ୍ତୃଦଗେ ଚାହିଁ । କାନ୍ଦଇ ଶିରେ କର ଦେଇ ॥
ଆସ ବନ୍ଧନ ଗୋପୀନାଥ । ଗହନେ ନ ଦିଶଇ ପଥ ॥
ମୋତେ ଇଷ୍ଟସ୍ପୃ ନାଶ କଲୁ । ଗୋପୀଙ୍କ ସଙ୍ଗ ଛଡ଼ାଇଲୁ ॥
କି ଦୋଷ କଲି ମୁହିଁ ତୋର । ଏବେଶି ଗଲୁ ବନଘୋର ॥
ଏମନ୍ତେ କାନ୍ଦଇ ତରୁଣୀ । କୃଷ୍ଣ ହସିଲେ ତାହା ଶୁଣି ॥
ଗୋପୀ ଯେ ଯାଉଥିଲେ ବନେ । ତାର ରୋଦନ ଶୁଣି କର୍ଣ୍ଣେ ॥
ନିକଟେ ମିଳିଲେ ତାହାର । ବୋଲନ୍ତି ଧରି କେଉଁକର ॥
ସଭେଇ କରି ପଚାରିଲେ । ବୋଇଲେ ଥିଲୁ କାହାକୁଲେ ॥
ମୋତେ ପକାଇ ଘୋର ବନେ । ଗୋବିନ୍ଦ ଗଲେ କୋପମନେ ॥
ତାର ବଚନ ଶୁଣି କର୍ଣ୍ଣେ । ଗୋପୀ ବୋଲନ୍ତି ଖେଦମନେ ॥
ଏଡ଼େ ନିଷ୍ଠୁର ତାର ଦେହୀ । ପୂତନାପ୍ରାଣ ଅଛି ଖାଇ ॥
ଅନେକ ହତ୍ୟା ଅଛି କରି । ଏବେ ଖାଇବ ଗୋପନାରୀ ॥
କାହିଁକି ଯିବୁ ଘୋରବନେ । ଅଇଲୁଁ ତାର ବେଣୁସ୍ଵନେ ॥
ଛାଡ଼ିଲୁଁ ସୁତ ସ୍ନେହ କାନ୍ତ । ଏ ବନେ ହୋଇଲୁଁ ଅନାଥ ॥
ଏମନ୍ତେ ପଥ ଅନୁସରି । କାନ୍ଦନ୍ତି କୃଷ୍ଣନାମ ଧରି ॥
ଗହନେ ପଶିଲେ ସକଳେ । ଷୋଳ ସହସ୍ର ଏକାବେଳେ ॥
ବୃକ୍ଷ ଗହଳ ଛାୟା ଦେଖି । ଅନ୍ଧାର ପ୍ରାୟେ ଉପଲକ୍ଷି ॥
ଭୟେ ବାହୁଡ଼ିଲେ ସକଳେ । ପୁଣି ମିଳିଲେ ନଦୀକୂଳେ ॥

ମନ ନିବେଶି କୃଷ୍ଣପାଦେ । କାନ୍ଦନ୍ତି ଶୋକ ଗଦଗଦେ ॥
ଦେହ ସଂସାର ପାଶୋରିଲେ । ମରଣ ପଥ ଅବୋରିଲେ ॥
କୃଷ୍ଣଚରଣେ ମନ ଦେଇ । କାନ୍ଦନ୍ତି ଶୋକଭର ହୋଇ ॥
ସେ ଗୋପୀ ଗୋବିନ୍ଦର ପାଏ । ସୁଜନ ଜନେ କର ଲୟେ ॥
ହରି ଚରିତ ଭାଗବତ । ଅମୃତ ରସମୟ ଗୀତ ॥
ଏଣେ କରିବା ମନ ତୋଷ । କହଇ ଜଗନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ରାସକ୍ରୀଡ଼ାୟାଂ ଶ୍ରୀକୃଷ୍ଣ
ବିଜୟେ ଗୋପୀକାବିଳାପୋ ନାମ ଦ୍ୱିତୀୟୋଽଧ୍ୟାୟଃ ।



## ତୃତୀୟ ଅଧ୍ୟାୟ ।

ଶ୍ରୀ ଋଷିରୁବାଚ ।

ଗୋପୀଏ ବସି ବାଲୁକୁଦେ । କାନ୍ଦନ୍ତି ଶୋକ ଗଦଗଦେ ॥
ହେ ନାଥ ଯଶୋଦାକୁମର । ତୋ ଜନ୍ମକାଳୁଁ ଗୋପପୁର ॥
ଦରିଦ୍ର ଦୁଃଖିତ ନ ଜାଣି । ଆମ୍ଭର ଘରେ କମଳିନୀ ॥
ଅନେକ ହୋଇଲା ସମ୍ପଦ । କେ କହୁ ଆମ୍ଭର ଆନନ୍ଦ ॥
ଆମ୍ଭ ଜୀବର ଅଛି ତୁହି । ତୋ ଛଡ଼ୁଁ ଅନ୍ୟ ଗତି ନାହିଁ ॥
ତୋର ସମ୍ପଦ ଭୋଗ କରି । ତୋ ମୁଖ ଚାହିଁ ଦିନ ହରି ॥
ମୁରଲୀନାଦେ ଅଣାଇଲୁ । ମୁହଁ ଅମିୟ ରସ ଦେଲୁ ॥
ଘୋରଗହନ ବନେ ଥୋଇ । ଅନାଥ କରିଗଲୁ କାହିଁ ॥
ଏବେ ଦେଖାଅ ପଦ୍ମମୁଖ । ଆମ୍ଭ ଜୀବନ ବାରେ ରଖ ॥
ତୋହର ଆଶ୍ରେ ବ୍ରଜନାରୀ । ଏ ବନେ ତୋତେ ଅନୁସରି ॥
ଆମ୍ଭର ଆରତ ହରାଗୁ । କୋଟିଏ କାମ ପ୍ରାପ୍ୟଦଗୁ ॥
ତୋର ସେବକ ଦୁଃଖ ନାଶୁ । ନିରସ ଜନଙ୍କୁ ଅଶ୍ୱାସୁ ॥
ତୋର ସେବକ ଅମ୍ଭେମାନେ । ତୋତେ ନ ଦେଖିଲେ ନୟନେ
ଯଥ ନ ଦଶେ ରାତ୍ରିକାଳେ । ବୁଡାଇ ଗଲୁ ଶୋକଜଳେ ॥
ହେନାଥ କମଳଲୋଚନ । ଦେଖାଅ ନିର୍ମଳ ବଦନ ॥

ତୋ ମୁଖ କମଳର ତେଜେ । ପଦ୍ମ କୁମୁଦ ଲକ୍ଷ୍ମୀ ଗଞ୍ଜେ ॥
ଯେ ଧନେ କିଣିଲୁ ଆମ୍ଭନ୍ତ । ଏ ବନେ କଲୁତ ଅନାଥ ॥
ସୁରତିନାଥ ତୁ ଆମ୍ଭର । କିଣିଲ ଦାସୀ ଆମ୍ଭେ ତୋର ॥
ଯାହାଙ୍କୁ କିଣି ଧନ ଦେଇ । କେ ତାଙ୍କୁ ଛାଡ଼େ ଭାବଗ୍ରାହୀ ॥
ସେ କି ନୁହଇ ତାର ବନ୍ଧ । ବେଦ ପୁରାଣେ ହୁଏ ବାଦ ॥
ଅନେକ ଦୁଃଖୁଁ ଅଛୁ ରଖି । ଏବେ ତୁ କରୁ ଉଦ୍ବମାଖି ॥
ବକା ଦଇତ ଅଘାସୁର । ଇନ୍ଦ୍ର ବରଷା ମହାଘୋର ॥
ବନ ଅନଳ ଷଣ୍ଢ ମୁଖୁଁ । ତୁ ନାଥ ରଖିଛୁ ଆମ୍ଭଙ୍କୁ ॥
ତୋହର ପାଦେ ଆଶ୍ରେ କରି । ଜନ୍ମ ମରଣକୁ ନ ଡରି ॥
ତୁ ନୋହୁ ଯଶୋଦାକୁମର । ଜୀବନ ଅଟୁ ପ୍ରାଣୀଙ୍କର ॥
ସକଳ ଜନ୍ତୁ ହୃଦେ ଥାଇ । ଅନ୍ତର ଜାଣୁ ଭାବଗ୍ରାହୀ ॥
ତୋତେ ଚିନ୍ତିଲ ବେଦବର । ନାଶିଲୁ ଅବନୀର ଭାର ॥
ତେଣୁ ଯାଦବକୂଳେ ଜାତ । ତୋହର ନାହିଁ ଆଦିଅନ୍ତ ॥
ହେ କୃଷ୍ଣ ବଂଶ ଚୂଡ଼ାମଣି । ଆମ୍ଭର ଶିରେ ଦିଅ ପାଣି ॥
ତୋହର କର ବ୍ରହ୍ମରାଶି । ଶରଣଜନ ଭୟ ନାଶି ॥
ପଦ୍ମହୁଁ ଅତି ସୁକୁମାର । କମଳା ବନ୍ଦିଅଛି ବର ॥
ତୋହର ପାଦ ପଦ୍ମ ଦୁଇ । ବନେ ଗୋରୁଙ୍କ ପଛେଥାଇ ॥
ପ୍ରାଣୀଙ୍କ ଦେହୁ ପାପନାଶେ । ଜଳଧି ତନୟା ବିଶେଷେ ॥
ସହସ୍ରଫଣା କାଳୀୟର । ସୁନ୍ଦର କଲ ଚିହ୍ନକାର ॥
ଆମ୍ଭର ହୃଦେ ତା ଲଗାଅ । କାମ ଅନଳ ତୁ ଲିଭାଅ ॥
ତୋହର ମଧୁର ବଚନ । ହୃଦେ ଭାବନ୍ତି ମୁନିଜନ ॥
ଆମ୍ଭେ ତୋହର ପଦବାସୀ । ମୂର୍ଚ୍ଛିତ ହୋଇଲୁ ମୁରାରି ॥
ତୋର ଅଧରୁ ସୁଧା ଦେଇ । ଜୀବନ ରଖ ଭାବଗ୍ରାହୀ ॥
ତୋର ଉଚିତ ସୁଧାବାରି । ଶ୍ରୁତି ଯୁଗଳେ ପାନ କରି ॥
ଜନ୍ମ ମରଣ ତାପ ନାଶେ । ଦୁରିତମାନ ଦେହୁ ଧ୍ୱଂସେ ॥
ପବିତ୍ର କରେ ଶ୍ରୁତିପଥ । ଶିବ ଜପଇ ଅବିରତ ॥

ତେଣେ ଯେ ହୋଇ ଜନମତ୍ତା । ସେ ନର ଚତୁର୍ବର୍ଗଦାତା ॥
ତୋ ଦରହାସିତ ବଦନ । କୋମଳ ମଧୁର ବଚନ ॥
ଧ୍ୟାନେ ମଙ୍ଗଳ ତନୁରୂପ । ଏକାନ୍ତ କଥା ହୃଦେ ତାପ ॥
କପଟ ପ୍ରାୟ ତୋର ଗତି । ଆମ୍ଭର ମନ ଏ ଦହନ୍ତି ॥
ତୁ ନାଥ ଗୋରୁଙ୍କର ମେଳେ । କାନନେ ଯାଉ ଯେତେବେଳେ
କୋମଳ ପାଦପଦ୍ମ ଗୃହ୍ଁ । ଆମ୍ଭର ହୃଦୟ ଦ୍ରବଇ ॥
କାଷ୍ଠ ପାଷାଣ ତୃଣ ଲଗି । ନ ପୁଣ ହୁଏ ଦୁଃଖ ଭାଗୀ ॥
ଯେବେ ଲୋଚନ ଦେଖି ତାହା । ତେବେ ସେ ସ୍ଥିର ହୁଏ ହିଆ ॥
ଦିନୁ ଯେ ଆସୁ ବନଅନ୍ତେ । ବାହାର ହୋଇ ଦେଖୁଁ ପଥେ ॥
କପାଳେ କୁଟିଳ କୁନ୍ତଳ । ହୃଦେ ଲମ୍ବଇ ବନମାଳ ॥
ଗୋରଜ ଦେଖି ତୋର ଦେହେଁ । ଆମ୍ଭ ଜୀବନ କାମେ ଦହେ ॥
ତୋର ଅଭୟ ପଦ୍ମପାଦ । ଶରଣ ଜନଙ୍କ ସମ୍ପଦ ॥
କମଳା ଦଣ୍ଡେ ନ ଛାଡ଼ଇ । ଆପଦକାଳେ ଯାହା ଧ୍ୟାୟୀ ॥
ଅନେକ ସୁଖ ପ୍ରସରଇ । ରଖ ଆମ୍ଭଙ୍କୁ ହସ୍ତ ଦେଇ ॥
ସୁରତିପଣେ ବଳଆର । ଶୋକ ବିନାଶୁ ପ୍ରାଣିଙ୍କର ॥
ସୁସ୍ୱରେ ବେଣୁନାଦ ପୂରେ । ଜନ୍ମ ମରଣ ତାପ ହରେ ॥
ଗୋରୁ ଚରାଇ ଯାଉ ବନେ । ତୋତେ ନ ଦେଖିଲେ ନୟନେ
ନିମିଷ ଯୁଗ ପ୍ରାୟ ମଣୁ । ଗୁରୁ ଗଉରବ ନ ଜାଣୁ ॥
ତୁ ଯେତେବେଳେ ଗୋପେ ପଶୁ । ପଥେ ମୁରଳୀନାଦ ଘୋଷୁ ॥
କୁଟିଳ କୁନ୍ତଳ ବଦନ । ଦେଖି ନ ତଳଇ ନୟନ ॥
ପତି ତନୟ ବନ୍ଧୁ ଭାଇ । ଆମ୍ଭେ ଏଡିଲୁ ତୋର ପାଇଁ ॥
ସୁସ୍ୱରେ ଗାଉ ବେଣୁଗୀତ । ଆମ୍ଭେ ହୋଇଲୁଁ ମୂର୍ଚ୍ଛିତ ॥
ଘନେ ଅଣିଲୁ ଘୋର ବନେ । ଆମ୍ଭଙ୍କୁ ତେଜିଲୁ କେସନେ ॥
ଏଡ଼େ ନିର୍ଦ୍ଦୟ ତୋ ଶରୀର । ବିଶ୍ୱାସ ନାଶିଲୁ ଆମ୍ଭର ॥
ଶୁଣି ତୋ ଏକାନ୍ତ ବଚନ । ହୃଦୟେ ଦହଇ ମଦନ ॥
[illegible] । ପିଛୁଡି ନ ପାରୁ ଯେ ଆଖି ॥

ତୋର ଶ୍ରୀମୁଖକୁ ଅନାଇଁ । ଆମ୍ଭର ମନ ନ ରହଇ ॥
ଆମ୍ଭ ଆରତ ଖଣ୍ଡିବାରେ । ତୋହର ଜନ୍ମ ଗୋପପୁରେ ॥
ସୁଫଳ କରଇ ସଂସାର । ହେଲେ ଗଞ୍ଜଇ ଯମଘୋର ॥
ତୋ ପାହୁଁ ଆନଗତି ନାହିଁ । ଉଦାସ ନ କର ଗୋସାଇଁ ॥
ଯେବଣ ପାଦ ଆମ୍ଭେ ଧରି । ସ୍ତନରେ ଗୃହୁଁ ଗୋପନାରୀ ॥
କର୍କଶ ସ୍ତନ ଯେ ଆମ୍ଭରି । ତ୍ରାସ କରଇ ବୋଲି ଡରି ॥
ସେ ପାଦ ଯେଉ ତୃଣାଙ୍କୁରେ । ଏବେ ଚଳିଲ କୁଞ୍ଜଘୋରେ ॥
ନ ପୁଣ କ୍ଷତ ହୋଇ ପାଦ । ମନରେ ଲଭୁଛୁ ବିଷାଦ ॥
ତୋହର ଦାସ ଜଗନାଥ । ସେ ପାଦେ ରଖ ଗୋପୀନାଥ ॥
ବୁଡ଼ିଲ ଘୋର ଭବଜଳେ । ଉଦ୍ଧରି ଧରି ରଖ କୂଳେ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ରାସକ୍ରୀଡ଼ାୟାଂ ଗୋପୀକା
ବିଳାପୋ ନାମ ତୃତୀୟୋଽଧ୍ୟାୟଃ ।



## ଚତୁର୍ଥ ଅଧ୍ୟାୟ ।

ଶ୍ରୀ ଶୁକ ଉବାଚ ।

କହନ୍ତି ଶୁକ ମହାମୁନି । ଶୁଣ ରାଜନ ଚୂଡ଼ାମଣି ॥
ଏମନ୍ତେ ବନେ ଗୋପନାରୀ । କାନ୍ଦନ୍ତି କୃଷ୍ଣ ନାମ ଧରି ॥
ଜୀବନ କୃଷ୍ଣପାଦେ ଦେଇ । ଦିଗ ଆକାଶ ନ ଦିଶଇ ॥
ଶରଣ ରକ୍ଷଣ ଗୋପାଳ । ଦେଖନ୍ତି ଗୋପୀଙ୍କ ବିକଳ ॥
ଭାବକୁ ଜକଟ ମୁରାରି । ଗର୍ବ ଯେ କଲେ ଗୋପନାରୀ ॥
ବନେ ଅନେକ ଦୁଃଖ ଦେଇ । ତୋଷ ହୋଇଲେ ରାବଣାରୀ ॥
ଯେସନେ ଚଞ୍ଚଳ ବିଜୁଳି । ଗୋପୀଙ୍କ ମଧ୍ୟେ ଅଛି ମିଳି ॥
ନୀଳ ଶରୀର ପୀତବାସ । ମୁଖ ପଙ୍କଜେ ମନ୍ଦହାସ ॥
କଣ୍ଠେ ଲମ୍ବଇ ବନମାଳ । ସୁନ୍ଦର ମଦନ ଗୋପାଳ ॥
ଭୁଜ ବିସ୍ତାରି ନରହରି । ଡାକନ୍ତି ଆସ ଗୋପନାରୀ ॥

ଗୋପୀ ଗୃହିଁଲେ ରାଧା ଗୁଣି । ମଧ୍ୟେ ବିଜୟ ଚକ୍ରପାଣି ॥
ଜୀବନ ପାଇଲେ ସକଳେ । ଗୋପୀ ଉଠିଲେ ଏକାବେଳେ ॥
ପତଙ୍ଗ ଅନଳେ ଅନାଇଁ । ଯେସନେ ପଡ଼ନ୍ତି ବେଗହୋଇ ॥
ବହନ ବେଢ଼ିଲେ ମୁରାରି । ଧନ୍ୟ ଜୀବନ ଗୋପନାରୀ ॥
ଅଙ୍ଗୁଳି ଛନ୍ଦନ୍ତି କେ କରେ । ଚରଣ ଭିଡ଼ିଲେ ନିର୍ଭରେ ॥
ପଣନ୍ତେ ବାନ୍ଧି ବନ ମାଳୀ । ଆନନ୍ଦେ ଦେଲେ ହୁଳାହୁଳୀ ॥
କେ କୁଚତଟେ ଆଲିଙ୍ଗନ । କେ ସଖୀ ଦିଅନ୍ତି ଚୁମ୍ବନ ॥
କେ ଦେଇ ଅଧରେ ଅଧର । ଅମୃତ କରନ୍ତି ଆହାର ॥
କେ ବେଣୀହସ୍ତେ ପାଦ ଧରି । ସ୍ତନେ ଚାପଇ ଗୋପନାରୀ ॥
କେ ଗୋପୀ ହୃଦେ କର ଚାପି । କଟାକ୍ଷ କରି ଚାହେଁ ଆକ୍ଷି ॥
କେ ଦୃଷ୍ଟି ଚାହେଁ କୋପ କରି । ସୁରଙ୍ଗ ଅଧର କାମୋଡ଼ି ॥
କେ ଯାଇ ନ ପାରେ ଚାହିଁଲେ । ଧରେ ଚାହିଁଇ କେଶଡ଼ୋଲେ ॥
ରସ ବୁଡ଼ିଲା ରସଭରେ । ଗୋବିନ୍ଦ ଦେଖିଲା ଭରରେ ॥
ଅଣ୍ଡାଳି କଲା ଆଲିଙ୍ଗନ । ତାର ଛୁଟିଲା ଖେଦମାନ ॥
କେ ରୂପ ଦେଖି ରସ ବୁଡ଼ି । ପୁଲକ କଲା ପ୍ରେମଗାଢ଼ି ॥
ଆନନ୍ଦ ମନେ ଧ୍ୟାନ କଲା । ଯୋଗିଙ୍କ ପ୍ରାପ୍ତ ସେ ରହିଲା ॥
କୃଷ୍ଣର ଦର୍ଶନେ ସାନନ୍ଦ । ଛୁଟିଲେ ମନୁ ଚିନ୍ତା ଖେଦ ॥
ବ୍ରହ୍ମସମାଧି ଯେସନ ଜନେ । ଉଚ୍ଛଳ ହୋନ୍ତି ଯୋଗଧ୍ୟାନେ ॥
ତକ୍ଷଣେ ଉଠିଲେ ମୁରାରି । ଆବୋରିଛନ୍ତି ବ୍ରଜନାରୀ ॥
କୃଷ୍ଣ ଯେସନେ ଗୁଣବନ୍ତ । ଅଧିକ ରୂପ ଗୋପୀନାଥ ॥
ଗୋପୀଙ୍କି ଘେନି ବନମାଳୀ । ଯମୁନା ବାଲିକୁଦେ ମିଳି ॥
କୁନ୍ଦ ମନ୍ଦାର ଫୁଲଗନ୍ଧ । ବିକାଶି ଭ୍ରମର ସମ୍ପଦ ॥
ଶାରଦଚନ୍ଦ୍ର ପ୍ରାପ୍ତ ଜଳ । ନିର୍ମଳ ବିରାଜଇ ବାଲି ॥
କୃଷ୍ଣର ପାଇଁ ଅଙ୍ଗ ସଙ୍ଗ । ତାପଛାଡ଼ିଲେ ଗୋପୀବୃନ୍ଦ ॥
ବ୍ରହ୍ମ ବିଗ୍ରହ ଛୁଇଁ ପାଇ । ଯେସନେ ପଣ୍ଡିତ ତୋଷ ହୋଇ ॥
ପାଲଟି ପିନ୍ଧିଲେ ବସନ । କୃଷ୍ଣଙ୍କୁ ବସାଇ ଆସନ ॥

ଯାହାଙ୍କୁ ହୃଦେ ଯୋଗୀ ଜନେ । ବସାନ୍ତି କଳ୍ପିତ ଆସନେ ॥
ଗୋପୀଙ୍କ ଭାବ ହୃଦେ ଘେନ । ମଧ୍ୟେ ବିଜୟ ଚକ୍ରପାଣି ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । ରୂପେ କି ଦେବା ପଟାନ୍ତର ॥
କୃଷ୍ଣ ବସାଇ ଗୋପୀଜନେ । ଚାହାନ୍ତି କଟାକ୍ଷ ନୟନେ ॥
ହରିର କୋଳଭୁଜ ଧରି । କୋପେ କହନ୍ତି ବ୍ରଜନାରୀ ॥
ବୋଲନ୍ତି ଶୁଣ ପ୍ରାଣନାଥ । ଅମ୍ଭେ ଦେଖିଲୁଁ ବିପରୀତ ॥
ଯାହାକୁ ଭାବେ ଯେ ଭଜଇ । ସେ କୃପାଁ ତାହାଙ୍କୁ ତେଜଇ ॥
ଭୋ ନାଥ ମୋହର ପରାୟେ । ଭାବେ ନ ଭଜନ୍ତି ଥୋକାଏ ॥
ସେ ବେଦକୁଳ ନ ରଖନ୍ତି । ଭୋ ନାଥ ଫେଡ ମନୋଭ୍ରାନ୍ତି ॥
ଶୁଣି ବୋଲନ୍ତି କୃଷ୍ଣହସି । ବରଜୟୁବତୀ ଆଶ୍ୱାସି ॥
ଶୁଣ ସକଳ ଗୋପନାରୀ । ଯେ ଯାହା ଭାବେ ପ୍ରୀତିକରି ॥
ଏକ ଆରକେ ଉପକାରେ । ଭଜନ୍ତି ସଂସାର ବେଭାରେ ॥
ଯହିଁ ସୁହୃଦପଣ ନାହିଁ । ଭାବ ନ ଦେଖିଲେ ଛାଡ଼ଇ ॥
ଭାବ ନ ଦେଖି ଯେ ଭଜଇ । ତାତ ଜନନୀ ପ୍ରାୟ ହୋଇ ॥
ତାହାକୁ ବୋଲି ବଡ଼ଜଣ । ସେ ପାଇ ବିଷ୍ଣୁର ଚରଣ ॥
ଥୋକେ ଭକତ ନ ଭଜନ୍ତି । ଆତ୍ମା ବଡିମା ପ୍ରକାଶନ୍ତି ॥
ସେ ଗୁରୁ ଦ୍ରୋହ ପାପ ପାଇ । ଉଭୟ ଲୋକେ ସୁଖ ନାହିଁ ॥
ଶୁଣ ଗୁଆଳୁଣୀ ସାବଧାନେ । ମୋତେ ଭଜନ୍ତି ଯେତେଜନେ ॥
ତାହାଙ୍କୁ ଭଜୁଥାଇ ମୁହିଁ । ମୋତେ ସେ ଭକତ ଜାଣଇ ॥
ମୋତେ ଭକତି ଯେ କରନ୍ତି । ଚଞ୍ଚଳ ହୋଇ ତାଙ୍କ ମତି ॥
ଦରିଦ୍ର ଯେହ୍ନେ ଧନ ପାଇ । ପ୍ରାଣୁ ଅଧିକ ସମ୍ଭାଳଇ ॥
ପୁଣି ହଜଇ ସେହୁ ଧନ । ବିଷାଦ ହେଉଥାଇ ମନ ॥
ଭାଳଇ ଧନେ ମନ ଦେଇ । କ୍ଷୁଧା ତୃଷାହିଁ ନ ଲାଗଇ ॥
ତେମନ୍ତ ହୋଇ ମୋର ଲୋକେ । ଭକତି କରୁଥାନ୍ତି ଥୋକେ ॥
ତୁମ୍ଭେ ତେମନ୍ତ ପ୍ରାୟ ହୋଇ । ମୋହର ଦେହେଁ ଚିତ୍ତ ଦେଇ ॥
ଲୋକ ବେଭାରେ ବେଦମତ । ଛାଡି ଭଜିଲେ ଅବିରତ ॥

ପଛେ ମୁଁ ଥାଇ ତୁମ୍ଭ ତୁଲେ । ତକଇ ଜାଣିଲଇଁ ବଳେ ॥
ମୋତେ ନ କର ତୁମ୍ଭେ ରୋଷ । ତୁମ୍ଭର ପୂରାଇବ ଆଶ ॥
ତୁମ୍ଭର ଭାବ ମୁଁ ଜାଣଇଁ । ଛନ୍ଦ କୁଟିଳ ମାୟା ନାହିଁ ॥
ଅନେକ କାଳେହେଁ ତୁମ୍ଭର । ମୁହିଁ ନ ପାରେ ଉପକାର ॥
ମୋହର ମାୟାର ଶାଙ୍କୁଳି । ଭାବେ କାଟିଲ ଗୋପବାଳୀ ॥
ତୁମ୍ଭର ଜନ୍ମ ବଧ ନାହିଁ । ମୋତେ କିଣିଲ ଭାବଦେଇ ॥
ମୋର ଭକତ ଯେ ଲୋଡନ୍ତି । ସେ ମୋର ପଥ ଆବୋରନ୍ତି ॥
ମୁହିଁ ଠାକୁର ତାହାଙ୍କର । ସୁଜନମାନଙ୍କ ବେଭାର ॥
କହଇ ଦାସ ଜଗନ୍ନାଥ । ମୁଁ କୃଷ୍ଣ ସେବକଙ୍କ ଭୃତ୍ୟ ॥

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ରାସକ୍ରୀଡାୟାଂ ଶ୍ରୀକୃଷ୍ଣ ବାକ୍ୟେ ସତ୍ୟ ବର୍ଣ୍ଣନେ ନାମ ଚତୁର୍ଥୋଽଧ୍ୟାୟଃ ।



## ପଞ୍ଚମ ଅଧ୍ୟାୟ ।

ଶ୍ରୀ ଶୁକ ଉବାଚ ।

କହନ୍ତି ବ୍ୟାସଙ୍କ ତନୁଜ । ଶୁଣ ପରୀକ୍ଷ ମହାରାଜ ॥
ଗୋପୀଏ କୃଷ୍ଣ ବୋଲ ଶୁଣି । ତନ୍ଦ୍ରା ଛାଡିଲେ ମନେ ଗୁଣି ॥
ସେ ବାଳବୃନ୍ଦେ ହୃଷୀକେଶ । ଆମ୍ଭର କଲେ କେଳିରସ ॥
ଏକର ହସ୍ତ ଆରେ ଧରି । ରାସ ଉତ୍ସବେ ବ୍ରଜନାରୀ ॥
ଅନନ୍ତ ମାୟାଯୋଗ କରି । ଷୋଳ ସହସ୍ର ରୂପଧରି ॥
ଗୋପୀଙ୍କେ ଗୋବିନ୍ଦେ ଗୋଟିଏ । ସ୍ୱର୍ଗେ ଦେଖନ୍ତି ଦେବତାଏ ॥
କେ କଣ୍ଠତଟେ ଭିଡ ବେଶେ । ଚୁମ୍ବନ ଦିଅନ୍ତି ହରଷେ ॥
କୃଷ୍ଣର ଦେଖି କ୍ରୀଡାରସ । ତ୍ରିଦଶେ ହୁଅନ୍ତି ହରଷ ॥
ଗନ୍ଧର୍ବ ଯକ୍ଷ ଅପସରୀ । ବିମାନେ ଗଗନେ ସଞ୍ଚରି ॥
ଦେଖନ୍ତି ଗୋବିନ୍ଦର କେଳି । ସପତ ସ୍ୱର୍ଗ ଲୋକେ ମିଳି ॥
ଦୁନ୍ଦୁଭିନାଦ ଗୀତସ୍ୱରେ । କୁସୁମ ବରଷନ୍ତି ଧୀରେ ॥
ଗନ୍ଧର୍ବେ ଅପସରା ମେଳେ । ନୃତ୍ୟ କରନ୍ତି ରସଭୋଳେ ॥

ହରି ବିନୋଦେ ବ୍ରଜନାରୀ । ଅନନ୍ଦେ ବୃନ୍ଦାବନ ପୂରି ॥
ବଳୟ ନୂପୁର ଶବଦେ । କିଙ୍କିଣୀ ତାଳ ଗୀତନାଦେ ॥
କେହି ନ ଶୁଣନ୍ତି ତହିଁଲେ । କୃଷ୍ଣର ମାୟା ଯୋଗବଳେ ॥
ନୀଳ ପର୍ବତ ମଧ୍ୟେ ହରି । ଯେସନେ ସୁବର୍ଣ୍ଣ ପାଚେରି ॥
ଗୋପୀଙ୍କ ମଧ୍ୟେ ଶିରିରଙ୍ଗ । ସୁନ୍ଦର କୋଟିଏ ଅନଙ୍ଗ ॥
ନୃତ୍ୟ କରନ୍ତି ଗୋପନାରୀ । ଗୀତେ ମୋହିଲେ ନରହରି ॥
ରାସ ବିଳାସ ରସରଙ୍ଗେ । ଉଲୁଟି କୁଟିଲ ଅନଙ୍ଗେ ॥
କୁଚମଣ୍ଡଳୁ ବସ୍ତ୍ର ଗଳି । ନାଚନ୍ତି ଦେଇ କରତାଳି ॥
ମୁଖେ ଶୋଭଇ ଶ୍ରମଝାଳ । କବରୀ ଖସି ଫୁଲମାଳ ॥
ବସ୍ତ୍ର ପଡ଼ଇ ଫିଟି ତଳେ । କଟୀମେଖଳା ଅସମ୍ଭାଳେ ॥
ବିଜୁଳି ଯେସନେ କଳାମେଘେ । ଦିଶନ୍ତି ଗୋବିନ୍ଦର ଆଗେ ॥
ଏକ ଗୋପୀଏ ନୃତ୍ୟରସେ । ଆଳାପି କଲା ଗୀତ ତୋଷେ ॥
ଅତି ସୁସ୍ୱରେ କଲା ତାନ । ଶବଦ ଆବୋରିଲା ବନ ॥
ଏକ ଗୋପୀଏ କୃଷ୍ଣ ସଙ୍ଗେ । ଆଳାପ କଲା ଗୀତରଙ୍ଗେ ॥
ଷଡ଼ଜ ଆଦି ପଞ୍ଚସ୍ୱର । ମୋହିଲା କମଳାର ବର ॥
ସେ ନାଦ ଘେନି ଆଉ ଗୋପୀ । ଆଳାପ କଲାକ ଛରୋପୀ ॥
ଧ୍ରୁବେ ଶବଦ ବିଶ୍ରାମିଲା । ଶୁଣି ହସନ୍ତି ନନ୍ଦବଳା ॥
କେ ପରିଶ୍ରମେ ଆଗେ ଯାଇ । ଭୁଜେ ଆଲିଙ୍ଗନ କରଇ ॥
ଫିଟି କବରୀ ଫୁଲମାଳେ । ଅବନୀ ପଡିଲେ ଗହଳେ ॥
କୃଷ୍ଣର କଣ୍ଠେ ଦେଇ ହସ୍ତ । ସର୍ବ ହୋଇଲା ଝୀନବସ୍ତ୍ର ॥
କୃଷ୍ଣର ଭୁଜ ଧରି ଗୋପୀ । ଅଘ୍ରାଣ କଲା ଶ୍ୱାସ ଝେପି ॥
ଚନ୍ଦନେ ଶାମଳିଲା ଦେହୀ । ଉତ୍ଫୁଲ ପ୍ରାଣ୍ୟେକ ବାସଇ ॥
ଆଘ୍ରାଣ କରି ନାସାଦ୍ୱାରେ । ରୋମାଞ୍ଚ ହୋଇଲା ଶରୀରେ ॥
କେ ଗୋପୀ ନୃତ୍ୟେ ଶ୍ରମଯାଇ । ଗୋବିନ୍ଦ କର୍ଣ୍ଣମୂଳେ ଚାଇ ॥
କୁଣ୍ଡଳ ତଟେ ମୁଖ ଦେଲା । ଚୁମ୍ବନେ ତାମ୍ବୁଳ ଲଭିଲା ॥
କେ ଭୁଜ ଧରି କୁଚେ ଚାପି । କେ ମୁଖେ ରହାନ୍ତି ଛରୋପି ॥

କଟୀମେଖଳା କ୍ଷୁଦ୍ରଘଣ୍ଟି । ଶବଦ କରି ନୃତ୍ୟେ ଘୃଷ୍ଟି ॥
ଗୋବିନ୍ଦ କର ଦେଇ ଶିରେ । ଶ୍ରମ ଛୁଟିଲା ମୁଖ ତରେ ॥
କୃଷ୍ଣଙ୍କୁ କାନ୍ତପଣେ ପାଇ । ଗୋପୀ ରମିଲେ ତୋଷହୋଇ ॥
ହରିର କଣ୍ଠେ ଭୁଜ ଦେଇ । ତୋଷେ ରମିଲେ ଗୀତ ଗାଇ ॥
ନୀଳୋତ୍ପଳ ଗୋପୀ କର୍ଣ୍ଣେ । ଅଳକା କପାଳର ଶ୍ରମେ ॥
ବଳୟ ନୂପୁର ଶବଦେ । ଗୋବିନ୍ଦ ନାଚନ୍ତି ଆନନ୍ଦେ ॥
ଭ୍ରମଣ ରଙ୍ଗେ ନୃତ୍ୟ କରି । ରାସ ଉତ୍ସବେ ବ୍ରଜନାରୀ ॥
କବରୀ ଫିଟି ଫୁଲମାଳି । କଟୀମେଖଳା ଅସମ୍ଭାଳ ॥
ଏମନ୍ତେ ନାନାରସ ବନ୍ଧେ । ଗୋବିନ୍ଦ ରମିଲେ ଆନନ୍ଦେ ॥
ଲୁବେର ଯେସନେ ଚରି ଶିଖେ । କିନ୍ନରୀ ରମେ ଆତ୍ମା ସୁଖେ ॥
କୃଷ୍ଣର ଅଙ୍ଗ ସଙ୍ଗ ଲାଗି । ଗୋପୀ ହୋଇଲେ ଶ୍ରମଭାଗୀ ॥
କେଶ ବସନ ଛନ୍ନବାସ । ଦୃଷ୍ଟ ଆଭରଣ ବିଶେଷ ॥
କୃଷ୍ଣର କ୍ରୀଡ଼ାରସ ଦେଖି । ଦିବ୍ୟ ବଧୂଧାଦି ମୁର୍ଛି ॥
ନକ୍ଷତ୍ରଗଣ ଚନ୍ଦ୍ର ସଙ୍ଗେ । ସକଳେ ପଡ଼ିଲେ ଅନଙ୍ଗେ ॥
ଗୋପୀଙ୍କେ କୃଷ୍ଣରୂପ ହୋଇ । ନାନା ବିନୋଦେ ଭାବଗ୍ରାହୀ ॥
ଯାହାର ନାହିଁ ରୂପରେଖ । ଗୋପୀଙ୍କି ଦେଲେ ଆତ୍ମା ସୁଖ ॥
ଗୋପୀଙ୍କ ମୁଖେ ଘର୍ମ ବିନ୍ଦୁ । ପୋଛନ୍ତି କରେ ଭାବଗ୍ରାହୀ ॥
ଯେ ଯାହା ଅଳଙ୍କାର ହରି । ଗୋପୀ ବିହାନ୍ତି ନରହରି ॥
କୃଷ୍ଣର ନଖକ୍ଷତ ପାଇ । ଆନନ୍ଦେ ପୁଲକିତ ହୋଇ ॥
କୃଷ୍ଣର ଗୁଣ କର୍ମ ମୁଖେ । କହନ୍ତି ଏକକୁ ଆରକେ ॥
ବ୍ରଜକାମିନୀ ଘେନି ସଙ୍ଗେ । ଚନ୍ଦ୍ର କୁଙ୍କୁମ ପଙ୍କ ଅଙ୍ଗେ ॥
ପଶିଲେ କାଳିନ୍ଦୀ ଭିତରେ । ଗନ୍ଧର୍ବ ଗାବନ୍ତି ସୁସ୍ୱରେ ॥
କରିଣୀ ଯୁଥେ ଗଜ ଯେସନେ । ଗୋପୀଙ୍କ ଶ୍ରମ ଜାଣି ମନେ ॥
ଗୋବିନ୍ଦ ଦେହେଁ ଗୋପନାରୀ । ଜଳ ସିଞ୍ଚନ୍ତି କରେ ଧରି ॥
କଟାକ୍ଷେ ଚାହାନ୍ତି ଶ୍ରୀମୁଖ । ଖଣ୍ଡିଲେ ଜନ୍ମ ବନ୍ଧ ଦୁଃଖ ॥
ବିମାନେ ଥାଇ ଦେବନାରୀ । ପୁଷ୍ପ ବରଷି ସ୍ତୁତି କରି ॥

ଗଜେନ୍ଦ୍ର ପ୍ରାୟେ ରଙ୍ଗମେଳେ । କ୍ରୀଡ଼ା ବିନୋଦ ନଦୀଜଳେ ॥
ଚନ୍ଦ୍ର କିରଣେ ବନ ଭୂମି । ସୁନ୍ଦର ପ୍ରକାଶେ ଯାମିନୀ ॥
ଗୋପ ଅବଳା ଗଣ ସଙ୍ଗେ । ହରି ରମିଲେ ଆତ୍ମାରଙ୍ଗେ ॥
ଯାହାର ନାହିଁ ରସଚ୍ୟୁତ । ଅନନ୍ତ ନାମ ଆଦିଅନ୍ତ ॥
ଶୁଣି ଅଭିମନ୍ୟୁନନ୍ଦନ । ଚାହିଁଲେ ଶୁକଙ୍କ ବଦନ ॥

ଶ୍ରୀ ପରୀକ୍ଷିତ ଉବାଚ ।

ସନ୍ଦେହେ କହନ୍ତି ମଧୁର । ଚରଣେ ଦେଇ ଦେଖିକର ॥
ହେ ମୁନି ଅସମ୍ଭବ ବାଣୀ । ସଂଶୟ ଲାଗିଲାଇ ଶୁଣି ॥
ମନୁଷ୍ୟ ଅଙ୍ଗେ ଜାତ ହୋଇ । ଅଶେଷ ବ୍ରହ୍ମାଣ୍ଡ ଗୋସାଇଁ ॥
ଅଧର୍ମ ନାଶିବାର ଆଶେ । ରୂପ ହୋଇଲେ ଯେବେ ଅଂଶେ ॥
ଧର୍ମ ପାଳକ ନରହରି । ସେ କିପାଁ ଅଧର୍ମ ଆଚରି ॥
ଜଗତଜନ ଗୁରୁ ପିତା । ଭକ୍ତ୍ୟ ଅଭକ୍ତ୍ୟ ଇଷ୍ଟଦାତା ॥
ଯାଂନାମ ମୁକତିପସରା । ସେ କିପା କଲେ ପରଦାରା ॥
ନିଜ ମହିମା ଆତ୍ମାରତ । ସେ କିପାଁ କଲେ ବିପରୀତ ॥
କି ଅଭିପ୍ରାୟେ ନ ଜାଣଇଁ । ଛେଦ ମୋ ସଂଶୟ ଗୋସାଇଁ ॥

ଶ୍ରୀ ଶୁକ ଉବାଚ ।

ରାଜା ବଦନ ଚାହିଁ ମୁନି । କହନ୍ତି କୃଷ୍ଣଭାବ ଘେନି ॥
ଶୁଣ ରାଜନ ଭାଗବତ । ଏ ବଡ଼ଲୋକଙ୍କର ମତ ॥
ଏହାଙ୍କ କର୍ମ ବିପରୀତ । ଯେଣୁ ଏ ତେଜେ ବଳବନ୍ତ ॥
ତେଣୁଟି ଦୋଷ ଗୁଣ ନାହିଁ । ଅଗ୍ନି ଯେସନେ ସର୍ବ ଖାଇ ॥
ଏହାଙ୍କ ମତ ଯେ ଆଚରି । ମାନବ କୁଳେ ଦେହ ଧରି ॥
ଯେବେ କରିବେ ମୂଢ଼ପଣେ । ନାଶ ହୋଇବେ ତତକ୍ଷଣେ ॥
ଜଳଧି ମନ୍ଥନର ବିଷ । ରୁଦ୍ରହିଁ ନୋହେ ଆନେ ଗ୍ରାସ ॥
ଏହାଙ୍କ ବଚନହିଁ ସତ୍ୟ । ଆନ ନ କରନ୍ତି ଏମନ୍ତ ॥
ଯେ ବୁଦ୍ଧିମନ୍ତ ସାଧୁ ଧୀର । ସେ ନ କରିବେ ଏ ବେଭାର ॥
ଈଶ୍ୱର ଆଦିଙ୍କର ମତ । ଅଳପଜନେ ବିପରୀତ ॥

ପଶୁ ମନୁଷ୍ୟ ଦେବଙ୍କର । ଏମନ୍ତ ନୁହଇ ଅସୁର ॥
ଯାହାର ଦେହେଁ ବୁଦ୍ଧି ନାହିଁ । ଶୁଭ ଅଶୁଭ ନ ଜାଣଇଁ ॥
ଯାହାର ପାଦପଦ୍ମ ଧୂଳି । ଆନନ୍ଦ ହୋଇ ଶିରେ ବୋଳି ॥
ଉତ୍ତଳ ଯୋଗେ ଶ୍ରମ କରି । କର୍ମ ସାଧନ୍ତି ବ୍ରହ୍ମଚାରୀ ॥
ତାହାର ଧର୍ମ ମୋକ୍ଷ ନାହିଁ । ଇଚ୍ଛା ସମ୍ପଦେ ଯାର ଦେହୀ ॥
ଗୋପୀ ଗୋପାଳ ଆଦିକରି । ଯେ ଜନ ଜୀବନ ଆବୋରି ॥
ଭକତଜନ ତାହିବାରେ । ଯେ ଜନ୍ମ ମନୁଷ୍ୟ ଶରୀରେ ॥
ତାର ଉଦିତ ମନେ ଚିନ୍ତି । ଭକତ ପଥ ଅବୋରନ୍ତି ॥
ଗୋପେ ଗୋବିନ୍ଦ ମାୟାମୋହି । କୋପ ନ କଲେ ମୁଖଗୃହିଁ ॥
ପାଶେ ଥିବାର ପ୍ରିୟ ମଣି । ଗୋପାଳେ ଦେଖନ୍ତି ତରୁଣୀ ॥
ଏମନ୍ତେ ରଜନୀ ପାହିଲା । ଗଗନେ ଅରୁଣ ଉଦିଲା ॥
କୃଷ୍ଣର ଅଙ୍ଗ ସଙ୍ଗ ପାଇ । ଗୋପୀଏ ଗଲେ ତୋଷହୋଇ ॥
କୃଷ୍ଣର ପାଦେ ଦେଇ ମନ । ମିଳିଲେ ଯେ ଯାହା ଭବନ ॥
ଗୋପୀ ଗୋବିନ୍ଦ କେଳିବନେ । ଏଣେ ଯେ ହୋନ୍ତି ସାବଧାନେ ॥
ଭକତି ହୃଦେ ପରିମାଣି । ଏଣେ ଦେଖନ୍ତି ଚକ୍ରପାଣି ॥
ସକଳ ଦୃଢ଼ତରୁ ତରେ । ସେ ନ ପଡ଼ନ୍ତି ମାୟାଘୋରେ ॥
ବୋଲଇ ଦାସ ଜଗନ୍ନାଥ । ରାସ ଉତ୍ସବ ଭାଗବତ ॥
ସୁଜନଜନ ଏହା ଚିନ୍ତି । ଏଣେ ଛାଡିବ ମନେଭ୍ରାନ୍ତି ॥
ଭକତ ହୋଇବ ଭ୍ରମର । ହେଲେ ତରିବ ଭବ ଘୋର ॥
ମୁଁ ଛାର ହୀନ ମୂଢ଼ପଣେ । ସେବଇଁ ଭ୍ରମର ଚରଣେ ॥
ମୋହର ନ ଘେନିବ ଦୋଷ । ଗୀତେ କହିଲି କୃଷ୍ଣରସ ॥
ପୂର୍ଣ୍ଣ କଲି ଗୀତ ରସ । ଯାହା ସେ କଲେ ପୀତବାସ ॥
କେ ତାହା କରିବନ୍ତି ଆନ । ସବୁରି ସ୍ୱାମୀ ଭଗବାନ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ
ଗୋପୀକାପୂର୍ଣ୍ଣକାମୋ ନାମ ପଞ୍ଚମୋଽଧ୍ୟାୟଃ ।

